# ସୃଜନିକା ଓ ବିଜ୍ଞାନ ତରଙ୍ଗ

ସୃଜନିକା ଶିକ୍ଷା, ବିଶେଷ କରି ବିଜ୍ଞାନ ଶିକ୍ଷା ଉପରେ କାମ କରୁଥିବା ଏକ ଆଗ୍ରହୀ ଦଳ। ନିଜ ଚାରିପାଖର ଜିନିଷ ପ୍ରତି ପିଲାର କୌତୁହଳ ବଢାଇବା, ମନରେ ପ୍ରଶ୍ନ ଉଠାଇବା, ସେ ସବୁର ଉତ୍ତର ଖୋଜିବା, ସମାଜରେ ବୈଜ୍ଞାନିକ ଦୃଷ୍ଟିକୋଣ, ମୌଳିକ ଚିନ୍ତାଧାରା ଓ ସୃଜନଶୀଳତାର ବିକାଶ କରିବା ସୃଜନିକାର ମୂଳ ଲକ୍ଷ। ବଡମାନଙ୍କୁ ବିଜ୍ଞାନର ବିଭିନ୍ନ ଦିଗ ବିଷୟରେ ସଚେତନ କରିବା ତଥା ଦେଶର ସ୍ୱାବଲମ୍ବନଶୀଳ ବିକାଶ ପାଇଁ ବୌଦ୍ଧିକ ପ୍ରସ୍ତୁତି ଆଣିବା, ଶିକ୍ଷା ବିଶେଷ କରି ବିଜ୍ଞାନ ଶିକ୍ଷାର ନୂଆ ନୂଆ ଦିଗ ଖୋଜିବା ଆଦି ଏହାର ଆଉ ଗୋଟିଏ ଦିଗ।

ଏସବୁ କାମ ପାଇଁ ଏହାର ମୂଳ ଆଧାର ହେଉଛି **ବିଜ୍ଞାନ ତରଙ୍ଗ** ପତ୍ରିକା। ଆଲୋଚନା ଓ ପ୍ରୟୋଗ ମାଧ୍ୟମରେ ବିଜ୍ଞାନର ପୂର୍ଣ୍ଣାଙ୍ଗ ଉପସ୍ଥାପନା ଏହାର ଲକ୍ଷ। ଏ ଦିଗରେ କାମ କରିବା ପାଇଁ ଆଗ୍ରହୀ କର୍ମୀ ଓ ଶିକ୍ଷକବନ୍ଧୁମାନଙ୍କ ପାଇଁ ଏହା ଗୋଟିଏ ସାଧନ ସାମଗ୍ରୀ ଭାବରେ ବ୍ୟବହୃତ ହୋଇଥାଏ। ସୃଜନିକାର ସବୁ କାମରେ ଏହା ଯୋଗାଯୋଗର ଏକ ମାଧ୍ୟମ ହୋଇଥାଏ।

ତେଣୁ ଆଗ୍ରହୀ ସାଥି ଏ ସବୁ କାମ ପାଇଁ ଆଗେଇ ଆସିବେ ଓ ବିଜ୍ଞାନ ତରଙ୍ଗର ଜଣେ ସହଯୋଗୀ ହୋଇ ଏ ଅଭିଯାନକୁ ଆଗେଇ ନେବାରେ ସହାୟକ ହେବେ ବୋଲି ଆମର ଆଶା ଓ ବିଶ୍ୱାସ।

# ଆମ ମନର ଗୀତ

(ତୃତୀୟ ସଂସ୍କରଣ)

ସୃଜନିକା।
ଜାଗମରା, ଡାକ: ଖଣ୍ଡଗିରି
ଭୁବନେଶ୍ୱର ୭୫୧୦୩୦

# ଆମ ମନର ଗୀତ

(ପିଲାଙ୍କ ମନଲାଖି ଗୀତ)

*ସଂକଳନ ଓ ପ୍ରକାଶନ*
ସୃଜନିକା
ଜାଗମରା, ଖଣ୍ଡଗିରି
ଭୁବନେଶ୍ୱର-୭୫୧୦୩୦
ଫୋନ୍ - ୨୩୫୦୬୬୪

ପ୍ରଥମ ସଂସ୍କରଣ ୧୯୯୪
ଦ୍ୱିତୀୟ ସଂସ୍କରଣ ୧୯୯୮
ତୃତୀୟ ସଂସ୍କରଣ ୨୦୦୪

*ମୁଦ୍ରଣ*
ଶୋଭନ
୧୦୬, ଆଚାର୍ଯ୍ୟ ବିହାର,
ଭୁବନେଶ୍ୱର

*ମୂଲ୍ୟ*
ଟ ୧୨.୦୦

# Ama Manara Gita

(Collection of Songs for Children's)

*Compilation & Publication*
SRUJANIKA
Jagamara, Khandagiri,
Bhubaneswar 751030
Tel - 2350664

First Edition 1994
Second Edition 1998
Third Edition 2004

*Printer*
Shovan
106, Acharya Bihar,
Bhubaneswar

*Price*
Rs. 12.00

# ସୂଚୀପତ୍ର....

# ଆମ କଥା

ଗୀତ ଶୁଣିବାକୁ ସମସ୍ତଙ୍କୁ ଭଲ ଲାଗେ। ପିଲାଠାରୁ ବଡ ଯାଏଁ ସମସ୍ତେ ଗୀତ ଗାଇ ବି ପାରନ୍ତି। କିଏ ହୁଏତ ଅତି ମଧୁର ସ୍ୱରରେ ତାଳ ଲୟ ଠିକ ରଖି ଗାଇପାରେ ତ କିଏ କର୍କଶ ସ୍ୱରରେ ବେତାଳିଆ ଗାଇଥାଏ। ମନଖୁସି ହୋଇଗଲେ ସମସ୍ତଙ୍କ ମୁହଁରୁ ଗୀତ ପଦେ ବାହାରିଆସେ। ପିଲାଟିଏ କଥା କହିବା ଆରମ୍ଭ କରିବା ଆଗରୁ ଆ.. ଆ.. କରି କେତେ ଗୀତ ଗାଇବାରେ ଲାଗିଥାଏ। ଆଉ ଦଳେ ପିଲା ଏକାଠି ହୋଇଗଲେ ତାଳି ମାରି ଗୀତ ଗାଇ ବହୁତ ମଜା କରନ୍ତି।

ମନର ଭାବକୁ ପ୍ରକାଶ କରିବା ପାଇଁ ଗୀତ ଏକ ବଢିଆ ମାଧ୍ୟମ। ବିଜ୍ଞାନମେଳା ଭଳି କାର୍ଯ୍ୟକ୍ରମ ସମୟରେ ଯେଉଁଠି ବହୁତ ଅଚିହ୍ନା ପିଲା ଏକାଠି ହୋଇ କାମ କରନ୍ତି, ସେଠି ସେମାନଙ୍କ ଭିତରେ ଅଜଣା ଭାବ କଟାଇ ବନ୍ଧୁତ୍ୱ ଜମାଇବାରେ ଗୀତର ଭୂମିକା ବହୁତ ଅଧିକ। ପିଲା-ବଡଙ୍କ ଭିତରେ ଥିବା ଦୂରତାକୁ କମାଇବାରେ ଗୀତ ବେଶ୍ ସାହାଯ୍ୟ କରେ।

ଗୀତଟିଏ ଗାଇବା ପାଇଁ ଜଣେ ଅତି ଭଲ ଗାୟକ ହେବା ବା ସଙ୍ଗୀତ ବିଶାରଦ ହେବା ଦରକାର ନାହିଁ। କେବଳ ଆଗ୍ରହ, ଉତ୍ସାହ ଥିଲେ ହେଲା। ଆମର ବିଭିନ୍ନ ବିଜ୍ଞାନମେଳା ସମୟରେ ନୂଆ ଗୀତ ସବୁକୁ ଥରେ ଦୁଇଥର ଶିଖାଇଲା ପରେ ସବୁ ପିଲା ଏକାଠି ମିଶି ଗୀତଗୁଡିକ ଗାଇ ପରିସରଟିକୁ ବେଶ୍ ଉତ୍ସବ ମୁଖରିତ କରିଥା'ନ୍ତି। ସେଠାରେ କେହି ସଙ୍ଗୀତ ବିଶାରଦ ନଥା'ନ୍ତି। ସମସ୍ତେ ଖୁସି ପାଇଁ ଗାଇଥା'ନ୍ତି।

ଆଜିକାଲି କିନ୍ତୁ ପିଲାଙ୍କ ମନକୁ ଛୁଇଁଲା ଭଳି ଗୀତର ବହୁତ ଅଭାବ ରହିଛି। ଶସ୍ତା ସିନେମା ଗୀତ ଛଡା ପିଲା ଆଉ କିଛି ଶୁଣିବାକୁ ପାଉନାହାଁନ୍ତି। ତେଣୁ ଗାଇବ ବା କ'ଣ ?

ସେଥିପାଇଁ ପିଲାଙ୍କ ମନକୁ ଛୁଇଁ ପାରିଲା ଭଳି କେତେଗୁଡିଏ ଗୀତ ଏକାଠି କରି ଆମ ମନର ଗୀତ ବହିଟି ଛପାଇଥିଲୁ। ଗୀତଗୁଡିକ ଆଗ ଜାଗମରାର ପିଲାମାନେ ଗାଇଥା'ନ୍ତି। ପ୍ରଥମ ସଂସ୍କରଣରେ ଥିବା କେତେଗୁଡିଏ ଗୀତ ପିଲାଙ୍କ ଦ୍ୱାରା ଆଦୃତ ହୋଇପାରିଲା ନାହିଁ। ତେଣୁ ସେ ଗୀତଗୁଡିକୁ ଏଥର ବାଦ ଦେଇ କିଛି ନୂଆ ଗୀତ ମିଶାଇଛୁ। ଜାଗମରାର ପିଲାମାନେ ଗୀତଗୁଡିକ ଗାଇ ଗୋଟିଏ କ୍ୟାସେଟ କରିଛନ୍ତି। କ୍ୟାସେଟରେ ବାଜା ନାହିଁ, କେବଳ ଗୀତର ସ୍ୱର ଜଣାଇବା ଏହି କ୍ୟାସେଟର ଉଦ୍ଦେଶ୍ୟ।

ଏସବୁ ଗୀତ ଭିତରେ ରହିଛି କିଛି ନୂଆ, କିଛି ପୁରୁଣା, କିଛି ଲୋକଗୀତ, ଇକବାଲ, ସଫଦର ହଶମୀଙ୍କ ଭଳି ଲେଖକଙ୍କର କିଛି ଗୀତ, ବିଜ୍ଞାନଗୀତ, ଚେତନାଗୀତ, ଦେଶାତ୍ମବୋଧକ ଗୀତ ସହିତ ବେଶ୍ କିଛି ଶିଶୁଗୀତ। ଅନେକଗୁଡିଏ ଗୀତର ଲେଖକ/ଲେଖିକାଙ୍କର ନାଁ ଆମେ ପାଇ ପାରିନାହୁଁ। ପ୍ରଥମ ସଂସ୍କରଣରେ ମଧ୍ୟ ଅନୁରୋଧ କରିଥିଲୁ। କିନ୍ତୁ ବହୁତ କମ ପ୍ରତିକ୍ରିୟା ପାଇଲୁ।

ଗୀତ ସଂଗ୍ରହ କରିବାରେ ପଙ୍କଜା ଓ ବିନୟ ଆମକୁ ବିଶେଷ ସାହାଯ୍ୟ କରିଥିଲେ। ଅଗ୍ରଗାମୀ, କାଶୀପୁର ଓ ସାମାଜିକ ସେବା ସଦନ, ଢେଙ୍କାନାଳର ପିଲାମାନଙ୍କର ଗୀତ ଆମକୁ ବହୁତ ଭଲ ଲାଗିଥିଲା। ଭାରତୀୟ ପ୍ରାକ-ବିଦ୍ୟାଳୟ ଶିକ୍ଷାସଂଘ ଦ୍ୱାରା ପ୍ରକାଶିତ *ଆସରେ ପିଲାଏ ଗାଇବା ଗୀତ* ବହିଟି ମଧ୍ୟ ଅନେକ ସମୟରେ ଆମକୁ ପ୍ରେରଣା ଯୋଗାଇଛି।

ଆଶାକରୁଛୁ ଗୀତଗୁଡିକ ପିଲାଙ୍କୁ ଭଲ ଲାଗିବ। ବଡମାନଙ୍କୁ ପିଲାଙ୍କ ସହ କାମ କରିବା ପାଇଁ ପ୍ରେରଣା ଯୋଗାଇବ। ଶେଷରେ ପିଲା ଭିତରେ ଥିବା ଛୋଟିଆ ସୃଜନଶୀଳ ମନଟିକୁ ଆଗେଇ ନେବାରେ ସହାୟକ ହେବ।

*ସୃଜନିକା ପରିବାର*



# ଆମେ ହସିଲେ ଦୁନିଆ ହସେ

ଆମେ ହସିଲେ ଦୁନିଆ ହସେ ହସେ ଆକାଶ ତାରା,
ହସି ଉଠଇ ବଉଦ ତଳୁ କୁଳି ଜହ୍ନଟା ପରା ।
ଲତା ଗହଳୁ ଫୁଲଟି ହସେ ହସେ ପରଜାପତି,
ନୀଳ ଆକାଶେ ଚଢେଇ ହସେ ଗାଏ ପବନ ଗୀତି,
ସାଗର ହସେ ସୂରୁଯ ହସେ ଶୁଖିଲା ମାଟି ହସେ,
ହସି ହସିକା ଦୂର ଆକାଶୁ ବରଷା କେତେ ଖସେ ।
ଆମ ହସରେ ଶୁଖାଇଦେବୁ ସବୁରି ଆଖି ଲୁହ,
ସବୁରି ଓଠେ ଝରାଇଦେବୁ ହସର ସୁନା ସୁଅ ।
ଗାଇବୁ ଆମେ ନାଚିବୁ ଆମେ ବଜାଇ କେତେ ବାଜା
କରିବୁ ମଜା ଆମେରେ ସବୁ ନୂଆ ଦୁନିଆ ରଜା ।

ଜୟନ୍ତୀ ତ୍ରିପାଠୀ



# ବୁଝିହୁଏନା ଗୋଟିଏ କଥା

ବୁଝିହୁଏନା ଗୋଟିଏ କଥା
ଭାବି ବସୁଛୁ ଯେବେ,
ବଡ ହେଉଛୁ କେବେ ଯେ ପୁଣି
ସାନ ହେଉଛୁ କେବେ।
ବାପା ମା' ତ ଚ୍ୟା ପିଅନ୍ତି ଆମ ବେଳକୁ ନାହିଁ,
ମା' କହନ୍ତି ଛୋଟ ପିଲାଏ ଚ୍ୟା ପିଅନ୍ତିନାହିଁ।
ଭାତ ଖାଇଲା ବେଳକୁ କିନ୍ତୁ ଖୁଆନ୍ତିନାହିଁ ମା'
କହନ୍ତି ଏବେ ବଡ ହେଲଣି ନିଜ ହାତରେ ଖାଆ।
ବାପାଙ୍କ ନୂଆ ସାଇକେଲଟା ଟିକିଏ ଦେଲେ ଛୁଇଁ,
ମା' କହନ୍ତି ଛୋଟ ପିଲାଏ ହାତ ଦିଅନ୍ତିନାହିଁ।
ବାଟ ଚାଲିଲାବେଳକୁ କିନ୍ତୁ କରନ୍ତିନାହିଁ କାଖ,
କହନ୍ତି ଏବେ ବଡ ହେଲଣି ନିଜେ ଚାଲିବା ଶିଖ।
ଫାଟକ ଖୋଲି ଏକୁଟିଆ ଟିକିଏ ଗଲେ ଚାଲି,
ମା' କହନ୍ତି ଛୋଟ ପିଲାଏ ଯିବନି ଏକା ବୁଲି।
ଏକା ଯେବେ ଶୋଇଲାବେଳେ ଡରରେ ଦେଉ ଡାକ,
କହନ୍ତି ଏବେ ବଡ ହେଲଣି ଏକା ଶୋଇବା ଶିଖ।



# ଆମେ ସବୁ ଟିକି ଟିକି କଳିକା

ଆମେ ସବୁ ଟିକି ଟିକି କଳିକା,
କଳା ଧଳା ନାଲି ଆଉ ନେଳିଆ,
ଆମେ ଫୁଲ ଫୁଟୁ ଜାତିଜାତିକା।
ଶିରି ଶିରି ବାଆ ପବନ ସାଥେ,
ରକ୍ତ ମୁଖା ଓଠ ନରମ ହାତେ,
ସବୁଜ କ୍ଷେତରେ ବାଡି ବଗିଗ୍ଚରେ,
ଆମେ ବୁଣିଯାଉ ରଙ୍ଗ ତଟକା।
କୁନି କୁନି ଆମ ଓଠ ପାଖୁଡାରୁ,
ମିଠା ମହୁ ଝରେ ପ୍ରତିଟି ପାତ୍ରରୁ,
ସୁନା ସକାଳର ଚୁନା କାକରରେ,
ଆମେ ନାଚି ଯାଉ ଝୁମିଝୁମିକା।
ଆମରି ଆଖିର କଅଁଳ ପତାରେ,
ଘୋଟିଆସେ ନିଦ ପତର ଶେଯରେ,
ଜନନୀର ମଧୁ କୋଳରେ ବଢୁରେ,
ଆମେ ସବୁ ତା'ର ଦୁଃଖ ପାଶୋରା।

ଅମ୍‌ଜାଦ୍



# ହାତୀ ନେ ଘୋଡ଼ା ନେ



ହାତୀ ନେ ଘୋଡ଼ା ନେ
 ମୋ ପେଁ କାଳୀ ବଜେଇ ଦେ,
ମୋତି ନେ ହୀରା ନେ
 ମୋ ଖେଳଘର ଗଢ଼େଇ ଦେ।
ସୁବର୍ଣ୍ଣର ଥାଳି ନେ ମାଣିକର ମାଳି ନେ,
 ମୋ ଗୁଡ଼ିଟିକୁ ଉଡ଼େଇ ଦେ,
 ମୋ ଛବି ବହି ପଢ଼େଇ ଦେ।
ଜାମା ନେ ଜୋତା ନେ ଜରି ପାଟ ଛତା ନେ,
 ମୋ ବରକୋଳି ଝଡ଼େଇ ଦେ,
 ମୋ ଖେଳଘର ଗଢ଼େଇ ଦେ।
ଶାରୀ ନେ ଶୁଆ ନେ ଧଳା ଭାଲୁ ଛୁଆ ନେ,
 ମୋ ଚକଟିକୁ ବୁଲେଇ ଦେ,
 ମୋ ବେଲୁନ୍‌କୁ ଫୁଲେଇ ଦେ।
କ୍ଷୀରୀ ପୁରି ଖଜା ନେ ବଡ ମାଛ ଭଜା ନେ,
 ମୋ ଦୋଳିଟିକି ହଲେଇ ଦେ,
 ମୋ ସାଇକେଲ ଚଲେଇ ଦେ।
ହୀରା ନୀଳା ମୋତି ନେ,
 ମୋ କଣ୍ଢେଇ କି ସଜେଇଦେ,
ଘୋଡ଼ା ନେ ହାତୀ ନେ,
 ମୋ ପେଁ କାଳୀ ବଜେଇ ଦେ।

ରାମକୃଷ୍ଣ ନନ୍ଦ

# ଇଟିକିଲି ମିଟିକିଲି

ଇଟିକିଲି ମିଟିକିଲି ଫୁଟିଗଲା କାଇଁଚ
ତମର ଆମର ନାଲି ପଇଁଚ ।
ଝିଲିମିଲି ତାରା ଦିଏ ନାହିଁ ଧରା
ଫୁଲେ ଫୁଲେ ଭରା ଚିକିମିକି ହୀରା
ଛୁଇଁ ଛୁଇଁ ଯାଏ ମେଘ ଜହ୍ନ ଆଉ ତାରା ।
ଜହ୍ନମାମୁ ଦେଶ ଯିବା ପିଲେ ଆସ
ଅଜା ମୋଡି ନିଶ ହସୁଥିବେ ହସ
ନାଚି ନାଚି ଖୋଇ ଦେବେ ଆଣି ଖଜା କୋରା ।
ମାମୁ ଦେଖେଇବେ ଯାତରାକୁ ନେବେ
କଣେଇ କିଣିବେ ସିନିହରେ ଦେବେ
ପକ୍ଷୀରାଜେ ବୁଲାଇବେ ଏ ଦୁନିଆ ସାରା ।



# ଟୁଇଁ ଟୁଇଁ ଟୁଇଁ ଫୁଲ ଫୁଟିଛି

ଟୁଇଁ ଟୁଇଁ ଟୁଇଁ ଫୁଲ ଫୁଟିଛି (ଆରେ ମୋର)
ସକାଳୁ ମିନି ଡାଲା ଧରି ଫୁଲ ତୋଳୁଛି ।
ଟପ୍ ଟପ୍ ଟପ୍ ଟପ୍ ଟପ୍ ଟପ୍ ବର୍ଷା ଝରୁଛି
ମିନି ଆମର ଛତା ଧରି ସ୍କୁଲ ଯାଉଛି ।
ଏକ ଦୁଇ ତିନି ଚାରି ପାଞ୍ଚ ଛଅ ସଂଖ୍ୟା ଗଣୁଛି
ମିନି ଆମର ବହି ଧରି ପାଠ ପଢୁଛି ।
କା କା କା କା କା କା କାଉ ରାବୁଛି
ମିନି ଆମର ତାଳି ମାରି ନାଚ କରୁଛି ।
ପେଁ ପେଁ ପେଁ ପେଁ ପେଁ ପେଁ ମହୁରୀ ବାଜୁଛି
ମିନି ଆମର ସାଥି ମେଳେ ଖେଳ ଖେଳୁଛି ।

(ସୌଜନ୍ୟ: ସାମାଜିକ ସେବା ସଦନ, ଢେଙ୍କାନାଳ)



# ଝୁମ ଝୁମ ଝୁମ ତାଳ ପକାଇ

ଝୁମ ଝୁମ ଝୁମ ତାଳ ପକାଇ
ଭାଲୁ ନାଚ କରେ ବାଜା ବଜାଇ ।
ପେଁ ପେଁ ପେଁ ବାଜେ ମହୁରୀ,
ମାଙ୍କଡ ନାଚିଲା ବାଡିକୁ ଧରି ।



ସିଂହ ନାଚେ ସାଜି ବଣର ରାଜା
ବିଲୁଆ ମନ୍ତ୍ରିରୀ ନାଚେ କି ମଜା ।
ପୁଷୀନାନୀ ନାଚେ ରାଣୀ ବେଶରେ
ରୁମ୍ ଝୁମ୍ ପାଦ ମହୁରୀ ସ୍ୱରେ ।
ବାଘ ସେନାପତି ବାନ୍ଧି ପଗଡି
ନିଶକୁ ଫୁଲାଇ ଦେଉଛି ରଡି ।



କୁହୁ କୁହୁ ଶୁଭେ କୋଇଲି ସ୍ୱର
ପୁଚ୍ଛ ଟେକି ରଙ୍ଗେ ନାଚେ ମୟୂର ।
ଥିଲେ ସେଠି ଯେତେ ଦେଖଣାହାରୀ
ଗୀତ ନାଚ ଦେଖି ମାରିଲେ ତାଳି ।

(ସୌଜନ୍ୟ: ଆସରେ ପିଲାଏ ଗାଇବା ଗୀତ)







# ଆମ ଜୁନା ଯିବ ମାମୁଘର

ଆମ ଜୁନା ଯିବ ମାମୁଘର
କୁଲେଇ କଣେଇ ସଜକର ।

*ମାମୁ ଘରେ କିଏ ଅଛି ? ଅଜା*

ଠୁକୁ ଠୁକୁ ବାଡି ଗ୍ଭଲି ତା'ର ଗ୍ଭଲୁଥାଏ ଅଜା ଦାଣ୍ଡଘର
ବସିଥାଏ ଅଜା ଦାଣ୍ଡଘର ଦଉଡି ବଳଇ ସରସର ।

*ମାମୁ ଘରେ କିଏ ଅଛି ? ଆଈ*

ଗାଈ ଦୁହୁଁଥାଏ ଚର ଚର ଦହି ମୋହୁଁଥାଏ ସର ସର
ଗାଈ ଦୁହୁଁଥାଏ ଚରର୍ ଚରର୍
ଦହି ମୋହୁଁଥାଏ ସରର୍ ସରର୍ ।

*ମାମୁ ଘରେ କିଏ ଅଛି ? ମାମୁ*

ସକାଳୁ ଉଠଇ ତରତର ହଳ କରିବାକୁ ଆଗଭର
ହଳ କରିବାକୁ ଆଗଭର କାଠ ଚିରିବାକୁ ଆଗଭର ।

*ମାମୁ ଘରେ କିଏ ଅଛି ? ମାଇଁ*

ପିଠୋଉ ବଟାକୁ ଧଡପଡ ଖିଡିକାଟା କରେ ଖିଡଖିଡ
ଚିତୋଉ କରେ ସେ ବଡ ବଡ
ଚକୁଳି କରେ ସେ ମଡମଡ ।

(ସୌଜନ୍ୟଃ ଆସରେ ପିଲାଏ ଗାଇବା ଗୀତ)





# ନୀଳ ଆକାଶରେ



ନୀଳ ଆକାଶରେ
ସୂର୍ଯ୍ୟ ଯହିଁ ହସେରେ
ଜହ୍ନମାମୁ ଦେଶରେ
ଯିବା ପିଲେ ଆସରେ
ରକେଟ ଚଢ଼ି ବସରେ ।

ଡାହାଣ ହାତ ଆଗକୁ ନିଅ, ଡାହାଣ ହାତ ପଛକୁ ନିଅ
ଧୀରେ ଧୀରେ ହଲାଇ ଦିଅ, ପୁଣି ଥରେ ଘୂରିଆସ ।
ବାମ ହାତ ଆଗକୁ ନିଅ, ବାମ ହାତ ପଛକୁ ନିଅ
ଧୀରେ ଧୀରେ ହଲାଇ ଦିଅ, ପୁଣି ଥରେ ଘୂରିଆସ ।
ବାମ ଗୋଡ଼ ଆଗକୁ ନିଅ, ବାମ ଗୋଡ ପଛକୁ ନିଅ
ଧୀରେ ଧୀରେ ହଲାଇ ଦିଅ, ପୁଣି ଥରେ ଘୂରିଆସ ।
ଡାହାଣ ଗୋଡ ଆଗକୁ ନିଅ ଡାହାଣ ଗୋଡ ପଛକୁ ନିଅ
ଧୀରେ ଧୀରେ ହଲାଇ ଦିଅ, ପୁଣି ଥରେ ଘୂରିଆସ ।
ଦେହଟା ସାରା ଆଗକୁ ନିଅ ଦେହଟା ସାରା ପଛକୁ ନିଅ
ଧୀରେ ଧୀରେ ହଲାଇ ଦିଅ, ପୁଣି ଥରେ ଘୂରିଆସ ।

(ସୌଜନ୍ୟଃ ଆସରେ ପିଲାଏ ଗାଇବା ଗୀତ)



# ଏଇ ତ ମୋର ମଥା

ଏଇ ତ ମୋର ମଥା
ଖରା ବରଷା ଦାଉ ସହେରେ ଧରଇ ଯେବେ ଛତା । (ମୁଁ)
ଏଇ ଯେ ମୋର ଆଖି
ମେଲାଇଦେଲେ ସବୁ ମୁଁ ଦେଖେ ରହେନାକିଛି ବାକି ।(ମୋର)
ଏଇ ଯେ ମୋର ନାକ
ଯିବା ଆସିବା କରେ ପବନ ଏଇଠି ଜୀବନଯାକ । (ମୋର)
ଏଇ ଯେ ମୋର ପାଟି
ଯାହା ମୁଁ ଖାଏ ଗ୍ରେବାଏ ଦାନ୍ତ ଦିଅଇ ସବୁ ବାଟି । (ମୋର)
ଜିଭ ଏଇ ମୋହରି
କହଇ କଥା ମିଠା ମିଠା ସୁଆଦ ପାରେ ବାରି । (ସେ ଯେ)
କାନ ଦିଓଟି ପୁଣି
ପତରଟିଏ ପଡିଲେ ତଳେ ପାରଇ ମୁହିଁ ଶୁଣି । (ମୁଁ)
ଏଇ ଯେ ମୋର ହାତ
ବାଁ ହାତରେ ମାଛି ଉଡାଏ ଡାହାଣେ ଖାଏ ଭାତ । (ମୁଁ)
ଏଇ ଯେ ମୋର ବାହା
ଦେହକୁ ମୋର ଦିଅଇ ବଳ ସବୁ କାମରେ ସାହା । (ମୋର)
ଏଇ ଯେ ମୋର ଛାତି
ଚମକି ପଡେନାହିଁ ମୁଁ କେବେ ଆସୁ ପଛକେ ହାତୀ । (ଯେବେ)
ଏଇ ଯେ ମୋର ପେଟ
ଯାହା ମୁଁ ଖାଏ ଯାହା ମୁଁ ପିଏ ସବୁ ଏଇଠି ଭେଟ । (ମୋର)
ପାଦ ଦୁଇଟି ଏଇ
ଦୁନିଆଁ ସାରା ଗ୍ଲଇ ମୁହିଁ ପାଦରେ ଭରା ଦେଇ । (ମୋର)

(ସୌଜନ୍ୟ: ଆସରେ ପିଲାଏ ଗାଇବା ଗୀତ)

# ଗାଁ ନୁହେଁ କି ନୁହେଁ ସହର

ଗାଁ ନୁହେଁ କି
ନୁହେଁ ସହର ନୁହେଁ ସହର ନୁହେଁ ସହର
ଏଇ ବଣ ମୂଳକେ
ଆମରି ଘର ଆମରି ଘର ଆମରି ଘର
ସେଇ ଦୂର ପାହାଡ ତଳେ
ମୁଁ ନାଚିନାଚିକା ଗୀତ ଗାଇଗାଇକା
ବୁଲେ ମୁଁ ଝରଣା କୂଳେ।

ନିତି କରେ ଶିକାର ନୁହେଁ କାହାକୁ ଡର
ମୋର ହାତେ ଥିଲେ ଧନୁଶର
ହସିବ ଉଠିବ ଏଇ ବଣ ପାହାଡ ଭୂଇଁ
ମୋର ଜାତି ଜାତି ଫୁଲ ଫଳେ।

(ସୌଜନ୍ୟ: ଅଗ୍ରଗାମୀ)





# ଆମେ ଯେତକ କୁନୁମୁନି

ଆମେ ଯେତେକ କୁନୁମୁନି,
ଭିତରେ ଆମର ହସମୁଣି (୨)
ଆମେ ନାଚୁ ଲା ଲା, ଗାଉ ପା ପା
ଲା ଲା ଲା ଲା ଲା।
ଚଞ୍ଚଳ ଦେଖ ଆମ ଗତି,
ନାହିଁ ତିଳେ ଭେଦଭାବ ଭୀତି,
ଆମେ ଚାଲୁ ମଟ୍‌ମଟ୍, କହୁ ଫଟ୍‌ଫଟ୍
ଲା ଲା-ଲା- ଲା-ଲା।
ଆମେ ବୁଲି ବାହାରିଲୁ ନୂଆ ଦେଶ,
ସାଥୀରେ ଯିବ ତ ଚାଲିଆସ,
ଆମେ ଅମୃତ ସନ୍ତାନ, ଭୟଭୀତିହୀନ
ଲା ଲା ଲା ଲା ଲା ।

ଶାନ୍ତିଲତା ରାୟ



# ହାତୀର ପାଠପଢା

ମୁଁ ମୋର ହାତୀକୁ ଗଣନା ଶିଖାଇବି
କହ ହାତୀ ଏକ ଖାଇବୁ ଯଦି କେକ୍
ଟିକେ ତୁ ଖାଇବୁ ଟିକେ ମୁଁ ଖାଇବି ।
କହ ହାତୀ ଦୁଇ ଖାଇବୁ ଯଦି ଖଇ
ଯୋଡେ ତୁ ଖାଇବୁ ଯୋଡେ ମୁଁ ଖାଇବି ।
କହ ହାତୀ ତିନି ବଜାଇବା ଗିନି
ଟିକେ ତୁ ବଜାଇବୁ ଟିକେ ମୁଁ ବଜାଇବି ।
କହ ହାତୀ ଚାରି ବସିବା ଚକା ପାରି
ଟିକେ ତୁ ବସିବୁ ଟିକେ ମୁଁ ବସିବି ।
କହ ହାତୀ ପାଞ୍ଚ କରିବା ଆମେ ନାଚ
ଟିକେ ତୁ ନାଚିବୁ ଟିକେ ମୁଁ ନାଚିବି ।
କହ ହାତୀ ଛଅ କୋଡି ଶାବଳ ଧଅ
ଟିକେ ତୁ ଖୋଳିବୁ ଟିକେ ମୁଁ ଖୋଳିବି ।
କହ ହାତୀ ସାତ ଖୋଳିବା ଆମେ ଗାତ
ଗୋଟେ ତୁ ଖୋଳିବୁ ଗୋଟେ ମୁଁ ଖୋଳିବି ।
କହ ହାତୀ ଆଠ କରିବାନାହିଁ ମଠ
ଗଛ ତୁ ଲଗାଇବୁ ଗଛ ମୁଁ ଲଗାଇବି ।
କହ ହାତୀ ନଅ ବହି ସିଲଟ ଧଅ
ସଂଖ୍ୟା ତୁ ଲେଖିବୁ ସଂଖ୍ୟା ମୁଁ ଲେଖିବି ।
କହ ହାତୀ ଦଶ ପଢିବା ଆମେ ବସ
ଟିକେ ତୁ ପଢିବୁ ଟିକେ ମୁଁ ପଢିବି ।

(ସୌଜନ୍ୟ: ସାମାଜିକ ସେବା ସଦନ, ଢେଙ୍କାନାଳ)

## ବାଇସାଇକେଲ ଚଢ଼ିଛି ମୁହିଁ

ବାଇସାଇକେଲ ଚଢ଼ିଛି ମୁହିଁ
ସିଧା ରଖିଅଛି ମୋ ହାତ ଦୁଇ
ବାଆଁ ପାଖେ ପାଖେ ଚଳାଏ ଦେଖ
ବୁଲାଇ ନେଲି ମୁଁ ପଡିଲା ବାଙ୍କ।
ବାଟରେ ଗ୍ଭଲନ୍ତି ବାଟୋଇ ଭାଇ
ଟିଣ୍ ଟିଣ୍ ଘଣ୍ଟି ଦେଲି ବଜାଇ।
ଆସିଲା ଟ୍ରକ ମଟର ଗାଡି
ଠିଆ ହୋଇଗଲି ଓହ୍ଲାଇ ପଡି।
ଗହଳି ଭାଙ୍ଗିଲା ଚଢ଼ିଲି ପୁଣି
ବଜାଇଲି ଘଣ୍ଟି ଟିଣି ଟିଣି।

(ସୌଜନ୍ୟ: ଆସରେ ପିଲାଏ ଗାଇବା ଗୀତ)

## କଣ୍ଢେଇ ବାହାଘର

ଆ ବଉଳ ମୋର
ତୋର ମୋର କରିବା ଆଜି କଣ୍ଢେଇ ବାହାଘର।
ତୋ କଣ୍ଢେଇ ମୋ କଣ୍ଢେଇ ଛିଟ କନାରେ ଦେବା ସଜେଇ
ତୋ କଣ୍ଢେଇ କନିଆ ହେବ ମୋ କଣ୍ଢେଇ ବର।
ମୋ ବରକୁ ତୋ କନିଆ ବେଦୀ ଉପରେ କରିବା ବାହା
ଭାତ ତିଅଣ ରାନ୍ଧିବା ପାଇଁ କରିବା ଧୂଳିଘର।
ସାଙ୍ଗସାଥିଙ୍କୁ ଡାକି ଆଣିବା ଭାତ ତିଅଣ ପରଶିଦେବା
ଆଜିଠାରୁ ତୁ ହୋଇବୁ ନୂଆ ସମୁଦୁଣୀଟି ମୋର।

 କ୍ଷୀରୋଦ ଚନ୍ଦ୍ର ପୋଥାଳ

# ନାନୀ ତେରି ମୋରନୀ କୋ

ନାନୀ ତେରି ମୋରନୀ କୋ
ମୋର୍ ଲେ ଗୟା,
ବାକି ଯୋ ବଚ୍ଚା ଥା
କାଲି ଗ୍ରେର୍ ଲେଗୟା ।
ଖା କେ ପି କେ ମୋଟା ହୋକେ
ଗ୍ରେର୍ ବୈଠା ରେଲ୍ ମେଁ,
ଗ୍ରେରୋଁ ବାଲା ଡିବା ଖଟ୍‌ଖଟ୍
ପହୁଞ୍ଚା ସିଧା ଜେଲ୍ ମେଁ ।
ଉସ୍ ଗ୍ରେରୋଁ କି ଖୁବ୍ ଖବର୍ ଲି
ମୋଟେ ଥାନେଦାର୍ ନେ,
ଗ୍ରେର୍ କୋ ଭି ଖୁବ୍ ନଚ୍ଚୟା
ଜଙ୍ଗଲ୍ କି ସରଦାର୍ ନେ ।
ଅଚ୍ଛି ନାନି ପ୍ୟାରୀ ନାନି
ରୁଷା ରୁଷି ଛୋଡ ଦେ,
ଜଲ୍‌ଦି ସେ ଏକ୍ ପୈସା ଦେ ଦେ
ତୁ କଞ୍ଜୁସି ଛୋଡ୍ ଦେ ।



# ସଭିଏଁ ଏକା ପରି

କିଏ ତ ଗୋରା କିଏ ତ କଳା ହଳଦୀ ରଙ୍ଗ କିଏ
କେଉଁ ପିଲାର ବାଦାମୀ ଦେହ ଗୋଲାପୀ ଦିଶେ କିଏ ।
ରଙ୍ଗ ସିନା ଭଲିକି ଭଲି
ଢଙ୍ଗ ଏକା ପରି
ପିଲାଏ ପରା ଦୁନିଆ ସାରା
ସଭିଏଁ ଏକା ପରି ।



ଖାଏ କେ ଭାତ ଖାଏ କେ ମାଛ
ମାଉଁସ ଅବା ରୁଟି
ଖାଇବ କ୍ଷୀରୀ କରଇ ଅଳି
ସକାଳୁ କିଏ ଉଠି ।
ଆହାର ସିନା ଭଲିକି ଭଲି ସଭିଏଁ ଏକା ପରି
ହସିଲେ ପିଲା ରାଇଜସାରା ହସରେ ଯାଏ ଭରି ।
କୁଡିଆ ଘରେ ରହେଟି କିଏ
ରହେ କେ କୋଠା ଘରେ
ଗଛରେ କିଏ ତୋଳଇ ଘର
କିଏ ବା ନାଆ ପରେ ।



ଘରଟା ସିନା ଭଲିକି ଭଲି
ରହଣି ଏକା ପରି
ସଭିଏଁ ପିଲା ସବୁରି ମୁହଁ
କଅଁଳ କଢ଼ି ସରି ।





ରବୀନ ଅବା ରୋହିତ କିଏ
ରହିମ, ରାମ, ଶାମ୍
ଜାକ୍ ଜିଲ୍ ହୁଆଙ୍ଗ କିଏ
ନାମରେ କେଉଁ କାମ ।
ନାଆଁଟି ସିନା ଭଳିକି ଭଳି ଖେଳ ତ ଏକା ପରି
ତିଆଁ ଡେଇଁରେ ନାଚ କୁଦରେ ମେଦିନୀ ଉଠେ ଥରି ।
କେଉଁ ପିଲାର ରେଶମୀ ଜାମା
ପଶମ ଜାମା କାର



ନାଇଚି କିଏ ଚଢେଇଠାରୁ
ଛଡେଇ ଆଣି ପର ।
କରିଚି କିଏ ପୋଷାକ ତା'ର
ହରିଣ ଛାଲ ଚିରି
ପୋଷାକ ସିନା ଭଳିକି ଭଳି
ପିଲା ତ ଏକା ପରି ।
ଦୁନିଆଁ ଯାକ ପିଲାଏ ଆମେ ବସିବା ଆସ ମିତ
ହସି ଖେଳିକା ନାଚି ନାଚିକା ଗାଇବା ଆମେ ଗୀତ ।
ପର ଆପଣା ଭାବଟି ଭୁଲି
ଚଳିଲେ ଏକା ପରି



ଏଇ ଭୂଇଁରେ ସରଗ ସୁଖ
ପଡିବ ସିନା ଝରି ।

(ସଂଗ୍ରହ: ତୃତୀୟ ଶ୍ରେଣୀ ପାଠ୍ୟପୁସ୍ତକ)







# କାହିଁକି ଭାଇ କାହିଁକି

କାହିଁକି ଭାଇ କାହିଁକି (୩ଥର)
ଆକାଶରେ ଏତେ ତାରା କେଉଁଠୁ ବା ଆସେ,
ଇନ୍ଦ୍ରଧନୁର ସାତ ରଙ୍ଗ କି ସୁନ୍ଦର ଦିଶେ ।
ମନ୍ଦାର ରଙ୍ଗଣୀ କିଆଁ ଦିଶେ ନାଲି ରଙ୍ଗ,
ଯୁଇ ଯାଇ ହେନାର ବାସ ଛୁଟେ ଚଉଦିଗ ।
ପକ୍ଷୀ ସବୁ ଉଡିଯାଏ ଡେଣା ତା'ର ମେଲାଇ,
ଉଡି ପାରେନି ବୋଲି ଏଠି କାନ୍ଦେ ବସି ବିଲେଇ ।
ତେନ୍ତୁଳି ନଡିଆ ଆମ୍ବ ସୁଆଦ ଥାଏ ଭରି,
ସମୁଦ୍ରର ନୀଳଲହରୀ ମଥା ପିଟିଯାଏ ଫେରି ।
ରାତିରେ କିଆଁ ଜୁଲୁଜୁଲିଆ ଦିଶେ ଚିକ୍‌ଚିକ୍,
ଲାଗେ ଯେପରି ମଶାଲ ଜଳେ ହୋଇ ଦିକ୍‌ଦିକ୍ ।
ଛୋଟ ଛୋଟ ରାମୁ ରାଧା ମା' ସାଥେ ବୁଲନ୍ତି,
ବୋଝ ଉଠାଇ ଅଇଁଠା ଖାଇ ମାଗି ମାଗି ବୁଲନ୍ତି ।
ଆସ ସମସ୍ତେ ମିଳିମିଶି ଉଚ୍ଚ କଣ୍ଠେ ଗାଇବା,
ଜୀବନର ସବୁ ପ୍ରଶ୍ନର ଉତ୍ତର ଖୋଜି ବୁଲିବା ।
ଭୋକ କାହିଁ ଅଛି କାହିଁ ହେଲୁ ଆମେ ଗରିବ,
ଅଜ୍ଞାନତା କାହିଁକି ଅଛି କାହିଁ ଅଛି ଅନ୍ଧାର,
ସମସ୍ତଙ୍କୁ ନ୍ୟାୟ ମିଳେନି ସବୁଠି ଭ୍ରଷ୍ଟାଗ୍ରର ।
ଆସ ସମସ୍ତେ ମିଳି ମିଶି ସଭିଙ୍କୁ ପଗ୍ଚରିବା,
ସାହସୀ ହେବା ମନେ ଭାବିବା
ଶକ୍ତି ନେଇ ଆଗେ ବଢିବା ।
ଆସ ଅପା ଆସ ଆଗେଇ ତୁମେ ଆସ ।

(ସୌଜନ୍ୟ:କେରଳ ଶାସ୍ତ୍ର ସାହିତ୍ୟ ପରିଷଦ)

# ଲକଡ଼ି କି କାଠି

ଲକଡ଼ି କି କାଠି, କାଠି ପେ ଘୋଡ଼ା
ଘୋଡ଼େ କି ଦୁମ୍ ପେ ଯୋ ମାରା ହଥୌଡ଼ା
ଦୌଡ଼ା ଦୌଡ଼ା ଦୌଡ଼ା ଘୋଡ଼ା ଦୁମ୍ ଉଠାକେ ଦୌଡ଼ା ।

ଘୋଡ଼ା ପହୁଞ୍ଚା ଚୌକ ମେଁ, ଚୌକ ମେଁ ଥା ନାଇ
ଘୋଡ଼େ ଜୀ କି ନାଇ ନେ ହଜାମତ ଯୋ ବନାଇ
ଚକ୍‌ବକ୍ ଚକ୍‌ବକ୍ ଚକ୍‌ବକ୍ ଚକ୍‌ବକ୍

ଘୋଡ଼ା ଥା ଘମଣ୍ଡି, ପହୁଞ୍ଚା ସବ୍‌ଜିମଣ୍ଡି
ସବ୍‌ଜିମଣ୍ଡି ବରଫ୍ ପଡ଼ି ଥି ବରଫ୍ ମେଁ ଲଗଗୟୀ ଥଣ୍ଡି
ଚକ୍‌ବକ୍ ଚକ୍‌ବକ୍ . . .

ଘୋଡ଼ା ଅପନା ତଗଡ଼ା ହୈ
ଦେଖୋ କିତନା ଚର୍ବି ହୈ
ଚରତା ହୈ ମେହରୋଲୀ ମେଁ ପର୍
ଘୋଡ଼ା ଅପନା ଅରବୀ ହୈ
ଚକ୍‌ବକ୍ ଚକ୍‌ବକ୍ . . .

ଗୁଲଜାର



# ଛାଇ ଆଲୁଅର ଖେଳ



ସୂର୍ଯ୍ୟ ଦିଏ ଆଲୁଅ
ଚନ୍ଦ୍ର କରେ ଛାଇ,
ସେ ଛାଇ ଯେବେ ପୃଥିବୀ ଛୁଏଁ
ପରାଗ ହୁଏ ତହିଁ ।
ତୋଫା ସୂରୁଜ ଖଣ୍ଡିଆ ଦିଶେ
କେବେ କେବେ ସେ ପୂରା ବି ଲୁଚେ,
ଦିନ ବେଳରେ ଗୋଧୂଳି ଆସେ,
ଜୀବର ମନେ ଛନକା ପଶେ ।
ନବୁଝେ ଯିଏ କାରଣ ତା'ର
କେତେ ଯେ କ'ଣ ମନରେ ଶୋଚେ ।



ପୃଥିବୀ ମା' ଛାଇ ବି କରେ,
ଚନ୍ଦ୍ର ଯେବେ ଲୁଚେ ତହିଁରେ,
ଗ୍ରହଣ ଲାଗିଯାଏ,
ପୂନେଇ ଜହ୍ନ ମଉଳି ଆସେ
ଖଣ୍ଡିଆ ଅବା ମାଟିଆ ଦିଶେ,
ଜହ୍ନମାମୁର ସେ ରୂପ ଦେଖି
ମନଟା ମରିଯାଏ ।
କିଏ ସେ କହେ ଅସୁର ଦୁଇ
ଗିଳନ୍ତି ସୂର୍ଯ୍ୟ ଚନ୍ଦ୍ରଙ୍କୁ ଧାଇଁ,

ଡରି ସେ ପଶେ ଘରେ, ଉପାସେ ମନ ମାରେ,
ଦିଅଁ ଦେବତା ପୂଜେ ସେ କେତେ
ଜଗତ ଉଦ୍ଧାର ପାଇଁ ।
କିଛି ମଣିଷ ଡରିଲେ ନାହିଁ,
ଦେଖି ଖୋଜିଲେ କାରଣ ଯାଇ ।



ପ୍ରଶ୍ନ ଆସିଲା,
ଖୋଜ ବଢିଲା,
ଆଖି ଦେଖିଲା,
ମନ ଘାଣ୍ଟିଲା,
ଯୁଗ ଯୁଗର କାମ ତାଙ୍କର
ରହସ୍ୟ ଖୋଲି ଦେଲା ।
ଜାଣିଲେ ଆମେ କେତେ ଗୁମର
ସୂର୍ଯ୍ୟ ଚନ୍ଦ୍ର ତାରା ସବୁର, ମନେ ଭରିଲା ବଳ ।
କରିବା ଆସ ଏବେ ମଉଜ,
ଦେଖିବା ଆମେ ଚନ୍ଦ୍ର ସୂର୍ଯ୍ୟର,
ଛାଇ ଆଲୁଅର ଖେଳ ।

ସୂର୍ଯ୍ୟ ଦିଏ ଆଲୁଅ
ଚନ୍ଦ୍ର କରେ ଛାଇ,
ଛାଇରୁ ହୁଏ ପରାଗ ଭାଇ
ଦେଖିବା ଆସ ଧାଇଁ ! (ଅପା)

ନିଖିଳ ମୋହନ ପଟ୍ଟନାୟକ

# ଆସରେ ଆସ

ଆସରେ ଆସ ଏ ଧରା ଶିଶୁ
ଗାଇବା ମିଶି ଗୀତ



ଉପରେ ଥାଇ ଗଗନ ଶୁଣେ
ବିଛାଇ ନୀଳ ଛାତ ।
ଶୂନ୍ୟରେ ଶୂନ୍ୟ କୋଟି ଯୋଜନ
ପାରିଛି କିଏ କଳି
ସୂରୁଜ ଢାଳେ ଆଲୋକ ଧାରା
ତା' କୋଳେ ଚଳି ଚଳି ।
ଆହା କି ତୋରା ସୁନ୍ଦର ଧରା
ତା' ପାଇଁ ସିନା ସତ ।



ବୁଲୁଛି ବୁଧ ଶୁକ୍ର ପୃଥିବୀ
ମଙ୍ଗଳ ବୃହସ୍ପତି
ଘୂରୁଛି ଶନି ୟୁରେନ୍‌ସ୍
ନେପ୍‌ଚୁନ ପ୍ଲୁଟୋ ସାଥି ।
ଜୋଛନା ଢାଳେ ବିମଳ ଶଶୀ
ତା' କୋଳେ ହୋଇ ରତ ।
ଉତର ଦିଗେ ସପ୍ତର୍ଷି ମେଳେ
ଧ୍ରୁବତାରା ଖେଳେ
ଛାୟାପଥରେ ଶୁଭ୍ର ଆଲୁଅ
ନକ୍ଷତ୍ର ମାଳେ ମାଳେ ।



ଗ୍ରହାଣୁ ପୁଞ୍ଜ ଧୂମକେତୁ ଏ
ବରିଲେ ନିଜ ପଥ।
ଦେଖି ଦେଖିବା ଭଳିଭଳିକା
ଗ୍ରହ ନକ୍ଷତ୍ର ଯେତେ
କେମିତି ଗ୍ୱଲେ କାହିଁକି ବୁଲେ
ଆଲୁଅ ଆଣେ ଏତେ।
ବିଜ୍ଞାନ ଭାଇ ଦେବ ବତାଇ
ଖୋଜିଲେ ସାଥି ହୋଇ।
ଆକାଶେ ଦେଶେ ଅଛନ୍ତି ଯିଏ
କାମରେ ତାଙ୍କ ଲୟ
ଧରାର କୋଳେ କାଳକାଳକୁ
କାମର ଏକା ଜୟ।
ସେ ରାଜ୍ୟ ଭାଇ ଦେଖିବା ଯାଇ
ଉଡାଇ ଦେବା ନେତ।



ବୀରକିଶୋର ପ୍ରଧାନ



# ଏଇ ଆମ ମାଟି ମା'



ଏଇ ଆମ ମାଟି ମା'ରେ
ତାହାରି କୋଳରେ ଜନମ ଲଭିଲେ
କୋଟି କୋଟି ସୁତ ସୁତାରେ ।
କେତେ ଉପକାରୀ ମାଆ ମୋର ସିଏ
ନା ନା ଉପାଦାନେ ଗଢା
ଖଣିଜ, ଜୈବ, ପାଣି ଓ ପବନ
ତାହାରି ଜୀବନ ପରା ।



ନାଳିଆ ଗେରୁଆ କଳା ହଳଦିଆ
କେତେ ରୂପେ ହୁଏ ସଜାରେ ।
ମାଆର ଜନମ ହୋଇଛି ଯେ କେବେ
କେ ଦେବ ତା'ର ଠିକଣା
କେତେ କେତେ ବଡ ଶିଳାରାଜି ଭାଙ୍ଗି
ହୋଇଅଛି ବାଲିକଣା ।
ତା' ସାଙ୍ଗେ ମିଶିଲା ପତ୍ରସଢା ଡାଳ
ମାଆକୁ ଉର୍ବର କଲାରେ ।



ମାଆ ମାଟି ଆମ ଅତି ଆପଣାର
ସହେ କେତେ ଦୁଃଖ କଷ୍ଟ
ଅଗଣିତ ଜୀବ ଆଶ୍ରୟୀ ତା' କୋଳେ
ଲଭି ତା' ସ୍ନେହ ସୁହାଗ ।
ଅଭିମାନ କେବେ କରିନି ସେ ମାଆ
ସେ ପରା ଚିର ଅମୃତାରେ ।

ଡାକ୍ତର ସାହୁ

# ଦେଖିଲେ କାବା ଲାଗୁଛି

ଆହାରେ ଆହା କେଡେ ବଢିଆ ମଣିଷ ତାକୁ କରିଛି
ଦେଖିଲେ କାବା ଲାଗୁଛି ।
କେତେ ଦୂରରୁ ଆସିଛି ତାର ବିଜୁଳିର କୁହ କି କାରବାର
ଜଳଇ ବତୀ ଘୂରଇ ପଙ୍ଖା ଚ୍ଚଲିଛି ଧାନକଳ
ମଟର ଦେଇ କିପରି ପୁଣି କୂଅରୁ ପାଣି ଉଠୁଛି
ଦେଖିଲେ କାବା ଲାଗୁଛି ।
ଏଡିକି ଖଣ୍ଡେ ରେଡିଓ କଳ କାନ୍ଧରେ ବୋହି ଚ୍ଚଲିଛି
କଥା କହୁଛି ଗୀତ ଗାଉଛି ଯେତେବେଳେ ଇଚ୍ଛା ଶୁଣୁଛି
ବିନା ତାରରେ ଦୂର ରାଇଜୁ ଖବର ବୋହି ଆଣୁଛି
ଦେଖିଲେ କାବା ଲାଗୁଛି ।
ପଥରଟିଏ ଆକାଶେ ଫିଙ୍ଗ ତଳକୁ ପଡେ ଖସି
ମଣିଷ କିନ୍ତୁ ଆକାଶେ ଉଡେ ଉଡାଜାହାଜେ ବସି
ଚଢେଇ ପରି ଡେଣା ମେଲାଇ କିପରି ଉଡି ଯାଉଛି ।
ଦେଖିଲେ କାବା ଲାଗୁଛି ।
କେତେ ରକମର ମଟରଗାଡି ଧାଇଁ ଚ୍ଚଲିଛନ୍ତି ଧୂମାଳ ଛାଡି
କେଡେ ବେଗରେ ସେ ଯାଉଛି
ସାଇକେଲ ବା ଶଗଡ ହେଉ ପଛରେ ପଡି ରହୁଛି
ଦେଖିଲେ କାବା ଲାଗୁଛି ।
ଚକଚକିଆ ଘଣ୍ଟା ମୁହଁରେ ତା'ର କଣ୍ଟା
ଦିନ ନାହିଁ ରାତି ନାହିଁ ଟିକ୍ ଟିକ୍ ହୋଇ ବୁଲୁଛି
ସମୟ କହି ଦେଉଛି ଦେଖିଲେ କାବା ଲାଗୁଛି ।

(ସୌଜନ୍ୟ: ଅଗ୍ରଗାମୀ)

# ଛିଟିଛିଟିକା ତାରା ଆକାଶ



ଛିଟିଛିଟିକା ତାରା ଆକାଶ
ତଳେ ହସୁଛି ଜହ୍ନ
କହୁଛି ସେଇ ଶୁଣରେ ଭାଇ
ପାଟିଟା କରି ବନ୍ଦ।
ପୃଥିବୀ ଠାରୁ ଜନମ ମୋର
ସୂରୁଜ ମୋର ଅଜା,
ଦୁନିଆ ଯାକ ପିଲାଏ ମତେ
ଦେଖି ପାଆନ୍ତି ମଜା।
ନିଜେ ମୁଁ ସଦା ଘୁରି ଘୁରିକା
ପୃଥିବୀ ଚଉପାଶେ,
ପୃଥିବୀ ଯାଏ ଘୂରି ଘୂରିକା
ସୂରୁଜ ଚଉପାଶେ।



ସୂରୁଜ ଠାରୁ ଆଲୁଅ ନେଇ
ଆଲୋକିତ ମୁଁ ହୁଏ,
ଆଲୁଅ ଢାଳି ଜଗତଟାକୁ
ସଦା ହସାଉ ଥାଏ।
କୋଳରେ କୁନାକୁନିକୁ ଧରି
ଦେଖାଏ ମା' ଜହ୍ନି,
ଦେଖରେ ଦେଖ ଆକାଶେ ଦେଖ
ଜହ୍ନମାମୁ ତ ସେଇ।

ଭଜ ଭାଇ, ପାରଳାଖେମୁଣ୍ଡି

# ପଢ଼ନା ଲିଖନା

ପଢ଼ନା ଲିଖନା ବୋଝ ନେହିଁ,
ହମନେ ୟହ ଐଲାନ କିୟା,
ଧରତୀ, ଅମ୍ବର, ନଦୀୟାଁ ଝରନେ
ସବ- ଅପନେ ହେଁ ଜାନ ଲିୟା ।
ଇନ୍ଦ୍ରଧନୁଷ କା ରଙ୍ଗ ବିଖରନା
ସାଗର ମେଁ ଲହର କା ଉଠନା
ପର୍ବତ କି ଚ୍ଚୋଟି, ଉପରସେ ଦରିଆଓଁ କା ବହତେ ଆନା
ଉଜଲି ଉଜଲି ସି ଏକ ଚ୍ଚାଦର
ମିଟିସେ ଅଙ୍କୁର କା ଆନା
ଅଙ୍କୁର ସେ ଜଙ୍ଗଲ ବନ ଯାନା
ଇନକା ଆପସ ମେଁ ହେଁ ରିସ୍ତା
ହମନେ ୟେ ପହଚ୍ଚାନ ଲିୟା । ଧରତୀ ଅମ୍ବର ....
ପହଲେ ପହଲେ ଇନସାନ କା
ଆଗ ଜଲାନା କ୍ଷେତି କର
ପେଡ଼ ଲଗାନା, ପହିୟେ କା ଆକାର ବନାନା
ବର୍ତନ ଗଢ଼ ଚ୍ଚାକ ଲଗାନା
ଭାପ କି ତାକତ ୟା ବିଜଲି ପର କାବୁ
ଆଟମ କା ଟୁକଡ଼ୋଁ ମେଁ ବଣ୍ଟନା
ମାନବ ମେଁ ମାନବତା ଲାନା
ଖେଲ ଖେଲ ମେଁ ଚ୍ଚାନ୍ଦ କୋ ଛୁନା
ଇନକା ଆପସ ମେଁ ହେଁ ରିସ୍ତା,
ହମନେ ୟେ ପହଚ୍ଚାନ ଲିୟା

ଗୌହର ରାଜା

# କିଏ ସେ କଲା

କିଏ ସେ କଲା କେମିତି କଲା,
କାହିଁକି ଅବା କଲା,
ଏତେ ବଡ ଏ ଆକାଶ ଦେହେ
କେତେ ଯେ ରଙ୍ଗ ଦେଲା ।





ସକାଳ ହୁଏ ସଞ୍ଜ ହୁଏ,
ଉଁଏ ସୂରୁଜ ବୁଡେ,
ଜହ୍ନମାମୁକୁ କୋଳରେ ଧରି
ତାରା ମଶାଲ ଜାଳେ ।

ସାଗର କୂଳେ ଲହରି ମାଳା,
ହୁଏନା ଟିକେ ଥୟ,
କାହାକୁ ଅବା ଖୋଜୁଛି ସିଏ,
ମନେ ତା' ଏକ ଲୟ ।
ନାନା ଜାତିର ଗଛ ପତରେ,
କେତେ ରଙ୍ଗର ଫୁଲ,
ରଙ୍ଗ ବେରଙ୍ଗ ପରଜାପତି,
କିଏ ତା କାରୀଗର ।





ପାଣି ଭିତରେ ମାଛଟି ଖେଳେ,
ଆକାଶେ ଉଡେ ପକ୍ଷୀ,
କେତେ ଯତନେ ମହୁଫେଣାଟି,
କରିଛି ମହୁମାଛି ।
ସାପର ଖେଳ ମୟୂର ନାଚ,
ଭୋକିଲା ବାଘ ଆଖି,
ଅବାକ ହୁଏ ଦେଖି ମୁଁ ସବୁ,
ଧନ୍ୟ ସେହି ଶିଳ୍ପୀ ।

କିଏ ସେ ଦେଲା ଭାବନା ଏତେ,
ଏତେ ଯେ ଶିହରଣ,
ଆଖିରେ ଲୁହ ଓଠରେ ହସ,
ଦୁଃଖ ଅଭିମାନ ।
ଯିଏ ବି ହେଉ ଯାହା ବି କରୁ,
ଯେଉଁଠି ଲୁଚିଥାଉ,
ଖୋଜିବି ତାକୁ ଜୀବନ ସାରା,
ଯାହା ବି ହେଲେ ହେଉ ।



ଜୟନ୍ତୀ ତ୍ରିପାଠୀ



# ବିଜ୍ଞାନ ଯୁଗର ନୂତନ କଳିକା

ଆମେ ବିଜ୍ଞାନ ଯୁଗର ନୂତନ କଳିକା,
ଆମେ ଅଜ୍ଞାନ ଅନ୍ଧାରେ ଆଲୋକ ବର୍ତ୍ତିକା
ହସି ହସି ଆମେ ଯିବୁରେ ମିଶି,
ସେଇ ଦୂର ମହାକାଶଯାନରେ ବସି ।
ଯାନ ଉଡିବ ମଙ୍ଗଳ ଗ୍ରହେ, ଶୁକ୍ର ଡାକୁଥିବ କେତେ ସ୍ନେହେ
ଆମେ ଗଢିବୁ ନୂଆ ଦୁନିଆ, ଯହିଁ ନଥିବ ଭୋକର ନିଆଁ
ରୋଗ ଦୁଃଖ ଉଡିଯିବ ଦୂରେ, ଶ୍ୟାମ ବନାନୀର ପରଶରେ ।
ତା ତା ଘିରି ଘିରି....
ଅମେ ବୁଡିବୁ ଅତଳ ଜଳେ, ନୂଆ ଶକ୍ତି ଉତ୍ସ ସନ୍ଧାନରେ
ସୌର ଶକ୍ତିର ସମ୍ଭାର ନେଇ, ଶସ୍ୟ ଭରିବୁ ମାନବ ପାଇଁ
ବାଧା ବନ୍ଧନ ମାନିବୁ ନାହିଁ, ଆତ୍ମବଳୀ ଦେବୁ ଦେଶ ପାଇଁ ।
ତା ତା ଘିରି ଘିରି....
ନାରୀ ଶିକ୍ଷା ସଭ୍ୟତାର ଚିହ୍ନ, ଶିଳ୍ପ ସମୃଦ୍ଧି ଦେଶ ସମ୍ମାନ
ସୁଖ ଶାନ୍ତି ଭରିବ ବିଜ୍ଞାନ, ଆଜି ଆମରି ଏଇ ବିଜ୍ଞାନ
ଅାସ କରିବା ସର୍ବେ ଶପଥ, ଶାନ୍ତି ସଂହତିକୁ କରି ବ୍ରତ ।
ତା ତା ଘିରି ଘିରି....

ପ୍ରେମଲତା ପଣ୍ଡା





# ବଢିଆ ଲାଗେ ଅଙ୍କର ଖେଳ

ବଢିଆ ଲାଗେ ଅଙ୍କର ଖେଳ,
(ଦେଖ) ୦,୧,୨,୩,.......୯ର କି ସୁନ୍ଦର ମେଳ,
ମିଶାଣ ଫେଡାଣ କର, ଗୁଣନ ହରଣ କର ,
ହରଣ ଗୁଣନ କର, ଫେଡାଣ ମିଶାଣ କର,
ମିଶା ଫେଡା ଗୁଣା ହରା ଗୁଣା ହରା ମିଶା ଫେଡା
କରିବା ଗ୍ୱଲ ।
ହିମାଳୟ ପାହାଡକୁ ମାପି ଥୋଇଲା (କିଏ.....)
ଯିଏ ଅଙ୍କ ଜାଣିଲା,
ସାତ ତାଳ ସାଗରର ଖାଲ ମାପିଲା (କିଏ.....)
ଯିଏ ଅଙ୍କ ଜାଣିଲା,
ନ ଦିଶିଲା ତାରାର ଦୂରତା ମାପିଲା (କିଏ.....)
ଯିଏ ଅଙ୍କ ଜାଣିଲା,
ଦେଶ ସାରା ଲୋକ ଯାକ କିଏ ଗଣିଲା (କିଏ.....)
ଯିଏ ଅଙ୍କ ଜାଣିଲା
ମିଶା ଫେଡା ଗୁଣା ହରା, ଗୁଣା ହରା ମିଶା ଫେଡା
କଲା କିମିଆ ।
ଅଙ୍କ ମଜା ଗ୍ୱଖିଛି ଯେ ଭାରି ସିଆଣି,
ଅଳପ ଖଟିକି ବେଶୀ ଯାଏରେ ଜାଣି,
ଯେତେ ଅଛି ଅଙ୍କ ସବୁ ଆମରି ସାଥି
ତା' ସାଥିରେ ଖେଳି ଖେଳି ଯିବାରେ ମାତି,
ମିଶା ଫେଡା ଗୁଣା ହରା, ଗୁଣା ହରା ମିଶା ଫେଡା
ଖେଳିବା ଗ୍ୱଲ ।

ବିନୟ କୃଷ୍ଣ ପଟ୍ଟନାୟକ

# ଏପରି ଶିକ୍ଷା



ହମ୍ ଭାରତକେ ବଚ୍ଛେ ଗୁରୁଜନ
ମାଙ୍ଗ ରହେହେଁ ଆପ୍‌ସେ,
ଐସି ଶିକ୍ଷା ଜିସ୍‌ମେ ଥୋଡା
ପ୍ୟାର ହୋ ଦୁଲାର ହୋ ।
ଛୋଟେ ଛୋଟେ ଗୀତ ହୋ,
ଥୋଡାସା ସଙ୍ଗୀତ ହୋ
ଖେଲ୍ ହୋ ଖିଲୋନେ ହୋ
ବହୁତ ମଜା ହୋ, ବହୁତ ହସିଁ ହୋ
ରଙ୍ଗ ଉମଙ୍ଗ ଔର ଭାଗ ଦୌଡ ହୋ ।



ଲାଖୋଁ ବଚ୍ଛେ ହୈ ହମ୍ ଯୈସେ,
ଶିକ୍ଷା କୋସୋଁ ଦୂର ହୈ ଯିନ୍‌ସେ,
କ୍ୟା ୱେ କଭି ପଢ ପାଏଙ୍ଗେ,
କ୍ୟ ୱେ କିତାବେ ପାଏଙ୍ଗେ
ହମ୍ ଭାରତ କେ ବଚ୍ଛେ ଗୁରୁଜନ
ମାଙ୍ଗ ରହେ ହୈଁ ଆପ୍ ସେ
ଶିକ୍ଷା ଯୋ ସବ୍ କି ଶିକ୍ଷା ହୋ
ଶିକ୍ଷା ଯିସ୍‌ମେ ବହୁତ ମଜା ହୋ ।

ଭାରି ବସ୍ତେ ଉଠା ଉଠା କର
 ଖେଲ କୁଦ ହମ୍ ଭୁଲ ଗୟେ ହେଁ
ହସ୍‌ନା ଗାନା ୟାଦ ନେହିଁ ହୈ
 ପଢନେ ମେଁ କୁଛ ମଜା ନେହିଁ ହୈ ।
ଆପ୍‌କେ ହାଥ୍ ମେଁ ଡଣ୍ଡା ହୈ
 ଆଖୋଁ ମେଁ କିତ୍‌ନା ଗୁସ୍‌ସା ହୈ
ଐସେ ମେଁ ପଢନା ମୁଶ୍‌କିଲ ହୈ
 କୁଛ୍ ଭି କର ପାନା ମୁଶ୍‌କିଲ ହୈ ।
ହିର୍‌ନୋଁ ଯୈସେ ଡର୍‌ତେ ଡର୍‌ତେ
 ତୋତୋଁ ଯୈସା ରଟତେ ରଟତେ,
ହାର ଜିତ୍ କେ ଖେଲୋଁ ମେଁ
 ବଚପନ୍ ସାରା ଖୋ ଯାତା ହୈ,
 ଜ୍ଞାନ କା ସପନା ଶୋ ଯାତା ହୈ ।

କେ.କେ.କ୍ରିଷ୍ଣକୁମାର



# ଆମ ପାଠଶାଳା

ଆମ ପାଠଶାଳା,
ନିଜ ହାତେ ଗଢ଼ା,
ଦିଶେ ଶୋଭାବନରେ ।
କୁଞ୍ଜେ କୁଞ୍ଜେ ମଧୁମାଳତୀ ହସେ,
କାନନ ଭରେ ମଲ୍ଲୀ ସଜଳ ବାସେ,
ପାହାନ୍ତି ସମୀରେ ତା'ର ପାଖୁଡ଼ା ଖସେ,
ପରମ ସୁହାଗେ ମରମ ଆବେଗେ, ସୁଖେ କାଟୁ ଦିନରେ ।
ଶାଳବଣେ ଡାକିଯାଏ ବିହଗ ବଧୂ ,
ମହୁମାଛି ଉଡ଼ି ପିଏ ବିମଳ ମଧୁ,
ଆମେ ସବୁ ଜାଗିଉଠୁ ଗଭୀର ନିଦୁ,
ଲାଗୁ ନିଜ କରମେ ଦେଶସେବା ଧରମେ,
ଢାଳି ମନପ୍ରାଣରେ ।
ନାରିକେଳ ପତ୍ରପୁଞ୍ଜେ ନୁଆନ୍ତି ମଥା,
ମନ୍ଦାରକଳିଟି ଖୋଲେ ନୟନ ପତା,
କାନେ କାନେ କହେ କେଉଁ ଗୋପନ କଥା,
ଝିରି ବାଆ ପରଶେ ପ୍ରାଣେ ଆଣେ ହରଷ,
ଘୁଞ୍ଚେ ଦୁଃଖଦୈନ୍ୟରେ ।

(ବାଜି ରାଉତ ଛାତ୍ରାବାସର ଗୀତ)



# ହୋଙ୍ଗେ କାମ୍‌ୟାବ୍

ହୋଙ୍ଗେ କାମ୍‌ୟାବ୍ ହୋଙ୍ଗେ କାମ୍‌ୟାବ୍,
ହମ୍ ହୋଙ୍ଗେ କାମ୍‌ୟାବ୍ ଏକ୍ ଦିନ୍...
ହୋ ହୋ ମନ୍ ମେ ହୈ ବିଶ୍ୱାସ୍ ପୂରା ହୈ ବିଶ୍ୱାସ୍
ହମ୍ ହୋଙ୍ଗେ କାମ୍‌ୟାବ୍ ଏକ୍ ଦିନ୍ ।
ହୋଗି ଶାନ୍ତି ଗ୍ୱରୋ ଔର୍ (୩) ଏକ୍ ଦିନ୍, ହୋ ହୋ...
ନେହିଁ ଡର୍ କିସିକୋ ଆଜ୍ ନେହିଁ ଭୟ କିସିକୋ ଆଜ୍
ନେହିଁ ଡର୍ କିସିକୋ ଆଜ୍‌କେ ଦିନ୍ ହୋ ହୋ...
ହମ୍ ଚଲେଙ୍ଗେ ସାଥ୍ ସାଥ୍ ଲେକେ ହାଥୋ ମେ ହାଥ୍
ହମ୍ ଚଲେଙ୍ଗେ ସାଥ୍ ସାଥ୍ ଏକ୍‌ଦିନ୍, ହୋ ହୋ...

# ଆମେ ବିଜୟୀ ହେବୁ

ଆମେ ବିଜୟୀ ହେବୁ ଆମେ ବିଜୟୀ ହେବୁ
ଆମେ ବିଜୟୀ ହେବୁ ନିଶ୍ଚୟ
ହୋ ହୋ ହୃଦେ ଆମର ଅଛି ବିଶ୍ୱାସ
ଆମେ ବିଜୟୀ ହେବୁ ନିଶ୍ଚୟ ।
ନାହିଁ ଭୟ ଆମର ନାହିଁ ଡର ଆମର
ନାହିଁ ଭୟ ଆମର ଆଜି । ହୋ ହୋ ...
ହେବ ଶାନ୍ତି ଗ୍ୱରିଦିଗେ ହେବ ଶାନ୍ତି ଗ୍ୱରିଦିଗେ
ହେବ ଶାନ୍ତି ଗ୍ୱରିଦିଗେ ନିଶ୍ଚୟ, ହୋ ହୋ...
ଆମେ ଯିବା ଆଗେଇ ହାତେ ହାତ ମିଳାଇ
ଆମେ ଯିବା ଆଗେଇ ନିଶ୍ଚୟ, ହୋ ହୋ...

# ଏମିତି ସ୍କୁଲ୍‌ରେ ମୁଁ ପାଠ ପଢନ୍ତି

ଏମିତି ସ୍କୁଲ୍‌ରେ ମୁଁ ପାଠ ପଢନ୍ତି
ହସି ଖେଳି ନାଚି ଗାଇ କେତେ ଶିଖନ୍ତି
ଅପା ଗୀତ ଶିଖାନ୍ତେ ଭାଇ ଗପ କହନ୍ତେ
ଅପା ନାଚ ଶିଖାନ୍ତେ ଭାଇ ସାଥେ ବୁଲନ୍ତେ
ନାଚି ଧିନ୍ ଧିନାଧିନ୍ ହସି ଖିଲି ଖିଲି
ଗାଇ ମିଳିମିଶି ବୁଲି ଝୁଲି ଝୁଲି ।
କି ସୁନ୍ଦର ଦିଶେ ଆମ ଟିକି ବଗିଚା,
ଭଳି ଭଳି ଫୁଲ ଫଳେ ଲାଗେ ତ ମଜା,
ପୋଖରୀ କୂଳରେ ଗାଏ ଟିକି ଚଢେଇ,
ତା' ମଧୁର ଗୀତ ମନ ଦିଏ ଭୁଲେଇ
ପ୍ରଜାପତି ପଛେ ଧାଇଁ ଖେଳି ଖେଳିକା
ସଫା କରି ପାଣି ଦେଇ ଗଢୁ ବଗିଚା
ଗଛ ପତର କୋଳେ ଫୁଲ ପାଖୁଡା ମେଲେ
କେତେ ଭଳିଭଳିକା ଫଳ ଡାଳରେ ଝୁଲେ ।
ବରଷକେ ଥରେ କରୁ ବଣରେ ଭୋଜି
ବଣ ପାହାଡର କୋଳେ ଯାଉରେ ମଜି
କାଠ ପାଣି ଆଣି ଆମେ ଜାଳୁରେ ଚୁଲି,
ନଈର କୂଳରେ ରାନ୍ଧୁ ଗୀତ ଯେ ବୋଲି,
ଆମରି ଖୁସିରେ ସାରା ବଣଟା ହସେ
ପାହାଡ ବି କଥା କହେ ଆମରି ସାଥେ
ଲୁଚି ପଥର କୋଳେ ଚଢି ଗଛର ଡାଳେ
ତୋଳୁ କେତେ ଯେ କୋଳି ଖେଳୁ ନଈର କୂଳେ ।

ଆମର ଏ ପାଠାଗାର ବହିରେ ଭରା,
ଗପ ଗୀତ ଚିତ୍ରେ ଲେଖା ଦୁନିଆଁ ସାରା
ଏଇ ଘରେ ନାଚ ଶିଖୁ ଗୀତ ବି ଶିଖୁ
ବାଜା ତାଳେ ମିଶାଉ ଯେ କେତେ ସୁରକୁ,
ଘାସର ଚଦରରେ ଢଙ୍କା ଆମ ପଡିଆ
ଡେଇଁ କୁଦି ନାଚି ଖେଳି ଲାଗେ ବଢିଆ,
ମନ ହାଲକା ହୁଏ ଦେହ ବଳ ତ ପାଏ
କେତେ ନୂଆ ଭାବନା ସବୁ ମନରେ ଖେଳେ।
ଅପା ଭାଇ ସାଥେ ମିଳି କାମ କରିବୁ
ଆମ ମନ ଲାଖି ଢଙ୍ଗେ ସବୁ ଶିଖିବୁ,
ମାଡ ଗାଳି ଡର ଛାଡି ହାତ ମିଳାଇ
ନୂଆ ଏକ ପାଠଶାଳା ଆମେ ଗଢିବୁ
ନିଜ ହାତେ ଗଢା ପାଠଶାଳା ଆମର
ଭୁଲିବୁନି କେବେ ତାକୁ ସାରା ଜୀବନ
ଘୋଷା ଚଳିବନାହିଁ ମାଡ ରହିବନାହିଁ
ନିଜ ହାତରେ କରି ପଢି ଚାଲିବୁ ଯହିଁ।

ବିନୟ କୃଷ୍ଣ ପଟ୍ଟନାୟକ



# ରାସ୍ତା ହୈ ଲମ୍ବା ଭାଇ

ରାସ୍ତା ହୈ ଲମ୍ବା ଭାଇ ମଞ୍ଜିଲ୍ ହୈ ଦୂର୍,
ହିମ୍ମତ୍ ସେ ଚଲେଙ୍ଗେ ମିଲ୍ କେ ଜରୁର୍,
ହମ୍ ହୈ ନୟେ ଇନ୍‌ସାନ୍, ହମ୍ ଚଲେଙ୍ଗେ ସିନାତାନ୍,
କୋଇ ଡର୍ ନେହିଁ ଜବ୍ ହମ୍
ମିଲ୍‌କେ ଚଲ୍‌ତେ ହୈଁ।
ଆଗେ ତୋ କଷ୍ଟ ହୈ ରୋଶ୍‌ନୀ ନେହିଁ,
ରାସ୍ତା ନିକାଲେଙ୍ଗେ ରୁକେଙ୍ଗେ ନେହିଁ,
ହମ୍ ହୈ ନୟେ....
ଭୁଖେ ହୈ ଥକେ ହୈ କୈସେ ଚଲେଙ୍ଗେ,
ସାଥିଓଁ କେ ମଦଦ୍ ସେ ଆଗେ ବଢେଙ୍ଗେ,
ହମ୍ ହୈ ନୟେ....
ଶର୍ଦ୍ଦି ଔର୍ ଗରମି ରାତ୍ ଦିନ୍ ମେ,
ଆଖିର୍ ତକ୍ ହମ୍ ଚଲେଙ୍ଗେ ହର ହାଲତ୍ ମେଁ,
ହମ୍ ହୈ ନୟେ....



# ତୁ ଜିନ୍ଦା ହୈ

ତୁ ଜିନ୍ଦା ହୈ ତୋ ଜୀନ୍ଦଗୀ କି
ଜିତ୍ ମେଁ ୟକିନ୍ କର୍
ଅଗର୍ କହିଁ ହୈ ସ୍ୱର୍ଗ ତୋ
ଉତାର ଲା ଜମିନ୍ ପର୍ ।
ୟେ ଗମ୍ କେ ଔର୍ ଚ୍ୱର୍ ଦିନ୍,
ସିତମ୍ କେ ଔର୍ ଚ୍ୱର୍ ଦିନ୍,
ୟେ ଦିନ୍ ଭି ଯାଏଙ୍ଗେ ଗୁଜର୍
ଗୁଜର୍ ଗୟେ ହଜାର ଦିନ୍,
କଭି ତୋ ହୋଗି ଇସ୍ ଚମନ୍ ପେ
ଭି ବାହାର୍ କି ନଜର ।
ହଜାର ଭେଷ୍ ଧର୍କେ ଆଇ
ମୌତ୍ ତେରେ ଦ୍ୱାର୍ ପେ,
ମଗର୍ ତୁଝେ ନା ଛଲ୍ ସକି,
ଚଲିଗୟୀ ଓ ହାର୍ କର୍,
ନଇ ସୁବହ କେ ସଙ୍ଗ ସଦା
ତୁଝେ ମିଲି ନୟୀ ଉମର୍ ।

ଶଙ୍କର ଶୈଳେନ୍ଦ୍ର



# ଖୁଦ୍ ଜିଏଁ ସବ୍‌କୋ ଜିନା ଶିଖାଏ

ଖୁଦ୍ ଜିଏଁ ସବ୍‌କୋ ଜିନା ଶିଖାଏ
ଅପ୍‌ନି ଖୁସିଆଁ ଚଲୋ ବାଣ୍ଟ ଆଏ
ତୋଡ ଲାଏଁ ଚଲୋ ସବ୍ ସିତାରେ
ଆଓ ଜୁଗ୍‌ନୁ ପକଡ ଲାଏ ସାରେ,
ଉନ୍‌କେ ଘର ଘର୍ ମେଁ ଦୀପକ ଜଲାଏଁ
ଅପ୍‌ନି ଖୁସିଆଁ ଚଲୋ ବାଣ୍ଟ ଆଏ ।
କିତ୍‌ନି ଖୁସିଆଁ ହୈ ଦୁନିଆ ମେଁ ଦେଖୋ
ଦୋନୋ ହାତୋଁ ମେଁ ଇନ୍‌କୋ ସମେଟୋ
ଆଓ ଖୁସିଓଁ କି ଫସଲେ ଉଗାଏଁ
ଅପ୍‌ନି ଖୁସିଆଁ ଚଲୋ ବାଣ୍ଟ ଆଏ ।
ସବ୍‌ଜି ହାଥୋ ମେଁ କଲିଆଁ ଖିଲି ହୈ
ସବ୍ କି ହୋଠୋଁ ମେଁ ଖୁସିଆଁ ସଜି ହୈ
ଆଓ ସବ୍ ପ୍ୟାର କା ଗୀତ୍ ଗାଏଁ
ଅପ୍‌ନି ଖୁସିଆଁ ଚଲୋ ବାଣ୍ଟ ଆଏ ।
ହେ ବଡି ଖୁବ୍‌ସୁରତ୍ କାହାନୀ
ଜିସ୍‌କୋ କହତେ ହେଁ ହମ୍ ଜିନ୍ଦଗାନୀ
ଆଓ ହର୍ ପଲ୍‌କୋ ମୋତି ବନାଏ
ଅପ୍‌ନି ଖୁସିଆଁ ଚଲୋ ବାଣ୍ଟ ଆଏ ।



# ବହି କିଛି କହୁଛି

ଶୁଣ ଭାଇ ଭଉଣୀ ହେ ବହି କିଛି କହୁଛି,
ଶୁଣିକି ପାରୁନା ତମେ ସେ ଯେ କେତେ ଡାକୁଛି,
ଚାଲ ବହି ଖୋଲିବା ତା'ର ଡାକ ଶୁଣିବା ।
ଆରେ ଆରେ ଆରେ ଆରେ ବାଃ
ହସ ଖେଳ ଗୀତ ଗପ କେତେ ଭରିଛି ।
ବିତିଲା ଦିନର ଦୁନିଆ କଥା
ଯୁଗେ ଯୁଗେ ମଣିଷର ଜୀବନଗାଥା
ଗୋଟି ଗୋଟି ହସ ଦୁଃଖ କାହାଣୀ
ହରା ଜିତା ସବୁ ତା' ଦେହେ ଲେଖା
ସିନିହ କାହାଣୀ କା'ର ହସ ଛୁଟାଏ
ଧରାମରା କଥା ପୁଣି ଲୁହ ବୁହାଏ
ଶୁଣି କି ପାରୁନା ତମେ ସେ ଯେ କହିଚାଲିଛି ।
ବହି ଦେହେ ପକ୍ଷୀ ଗାଏ ନାଚିନାଚିକା,
ତା' କ୍ଷେତରେ ଢେଉ ଖେଳେ ଲୋଟିଲୋଟିକା
ତା' ଝରଣା ବହିଯାଏ ଗାଇଗାଇକା,
ଶୁଣାଏ ପୁଣି ପରୀରାଇଜ କଥା ।
ରକେଟ ଜାହାଜ ଆଉ ଅଜଣା ନୁହେଁ
ବିଜ୍ଞାନର କାଲି ଆଜି ସବୁ ସେ କହେ
ବହିର ଦୁନିଆ ସତେ କେତେ ଯେ ବଡ
ଦୁନିଆ ଯାକର କଥା ତା' ଦେହେ ଭରା ।
ଆମରି ପାଖରେ ସେ ତ ରହିବାକୁ ଚାହୁଁଛି ।

ମୂଳ ରଚନା: ସଫଦର ହସମୀ
ଓଡିଆ ରୂପାନ୍ତର: ବିନୟ କୃଷ୍ଣ ପଟ୍ଟନାୟକ

# ହିନ୍ଦୁ ୟା ମୁସଲମାନ

ହିନ୍ଦୁ ୟା ମୁସଲମାନ, ଶିଖ ହେଁ ୟା ପାର୍ସି ହେଁ ହମ୍
ପ୍ୟାର ସେ ଏତବାର ସେ ଆଜ ସେ କହେ
ଇନ୍‌ସାନ୍ ହେଁ ହମ୍।
ୟହୁଦୀ ହେଁ ବୁଦ୍ଧ ହେଁ ଜୈନ ହେଁ ଆସ୍ତିକ ୟା ନାସ୍ତିକ ହେଁ ହମ୍
ଗ୍ରିବ ହୋ ୟା ହଜାର ହୋ ମିଲକେ କହେ ଇନସାନ ହେଁ ହମ୍
ନା ଚନ୍ଦା ପର୍ ଶନି ପର୍ ଶୁକ୍ର ପର୍
ନା ସୂରଜ ପର୍ ତାରୋଁ ପର୍ ମଙ୍ଗଳ ପର୍
ନା ଔର ହେଁ କହିଁ ଐସି ସୁନ୍ଦରତା
ଜିନ୍ଦଗୀ ହେଁ ଅପନୀ ହି ଧରତୀ ପର୍
ରାଜ୍ କି ୟେ ବାତ୍ ହେଁ, ଜିନ୍ଦଗୀ ଜିଏ
ଇନ୍‌ସାନ୍ ହେଁ ହମ୍। ୟହୁଦୀ ....
ବରଷୋଁ ବରଷ ପହଲେ ଧରତୀ ଥୀ ଚୁପ
ଖିଲ୍ ଆୟି ଧୀରେ ସେ ଜିନ୍ଦଗୀ ବହୁତ
ଏକ୍ ଭି, ହମ୍ ଅନେକ ଭି
ଇସଲିଏ କହେ କ୍ୟୁଁ ନା ହମ୍ କହେ
ଇନ୍‌ସାନ ହେଁ ହମ୍। ୟହୁଦୀ ....
ହମ୍ ମସଜିଦ ମେଁ ଯାଏଁ ୟା ମନ୍ଦିର ମେଁ
ହମ୍ ଗୁରୁଦ୍ୱାରେ ଯାଏଁ ୟା ଗୀରଜେ ମେଁ
ହମ୍ ଅଗିୟାରୀ ଯାଏଁ ୟା ଦରୋସର୍
ଏକ ହି ଆରଜୁ ହର ଦିଲ ପର୍
ପ୍ରାର୍ଥନା ଦୁଆ ଏକ ହେଁ, ଶାନ୍ତି ସେ ରହେ,
ଇନସାନ ହେଁ ହମ୍। ୟହୁଦୀ ....

ବିନୟ ମହାଜନ ଓ ଗ୍ରୁଲ ଭରଦ୍ୱାଜ୍

# ତୁମ୍ ହି ହୋ ମାତା

ତୁମ୍ ହି ହୋ ମାତା,
ପିତା ତୁମ୍ ହି ହୋ,
ତୁମ୍ ହି ହୋ ବନ୍ଧୁ
ସଖା ତୁମ୍ ହି ହୋ ।
ତୁମ୍ ହି ହୋ ସାଥି ତୁମ୍ ହି ସହାରେ
କୋଇ ନା ଅପନା ସିୱା ତୁମ୍‌ହାରେ,
ତୁମ୍ ହି ହୋ ନୈୟା,
ତୁମ୍ ହି ଥି ବୈୟାଁ
ତୁମ୍ ହି ହୋ ବନ୍ଧୁ
ସଖା ତୁମ୍ ହି ହୋ ।
ଯୋ ଖିଲ୍ ସକେନା ୱ ଫୁଲ୍ ହମ୍ ହୈ
ତୁମ୍‌ହାରି ଚରନୋଁ କେ ଧୂଲ୍ ହମ୍ ହୈ,
ଦୟା କି ଦୃଷ୍ଟି ସଦା ହି ରଖନା
ତୁମ୍ ହି ହୋ ବନ୍ଧୁ ସଖା ତୁମ୍ ହି ହୋ ।



# ଆ ଚଲ୍‌କେ ତୁଝେ

ଆ ଚଲ୍‌କେ ତୁଝେ ମୌଁ ଲେ କେ ଚଲୁ
କହିଁ ଐସି ଗଗନ କେ ତଲେ
ଜହାଁ ଗମ୍ ଭି ନା ହୋ ଆଁଶୁ ଭି ନା ହୋ
ବସ୍ ପ୍ୟାର ହି ପ୍ୟାର ପଲେ
ଇକ୍ ଐସି ଗଗନ କେ ତଲେ ।

ସୂରଜ କି ପହଲି କିରନ୍ ସେ
ଆଶା କା ସବେରା ଜାଗେ
ଚନ୍ଦା କି କିରନ୍ ସେ ଝୁଲ୍ କର
ଘନ୍ ଘୋର ଅନ୍ଧେରା ଭାଗେ
କଭି ଧୂପ ମିଲେ କଭି ଛାଓଁ ପଲେ
ଲମ୍ବି ଡଗର ନା ଖଲେ
ଇକ୍ ଐସି ଗଗନ ...

ଜହାଁ ଦୂର ନଜର ଦୌଡ଼ାଏ
ଆଜାଦ ଗଗନ ଲହରାଏ
ଜହାଁ ରଙ୍ଗ ବେରଙ୍ଗ ପଞ୍ଛି
ଆଶା କା ସନ୍ଦେଶା ଲାଏ
ସପନୋଁ ମେଁ ପଲି ହସତି ହୋ କଲି
ଜହାଁ ଶାମ ସୁହାନୀ ଢଲେ
ଇକ୍ ଐସି ଗଗନ ....

କିଶୋର କୁମାର

# ସୁନ୍ଦର ମୋ ଜନମଭୂଇଁ

ସୁନ୍ଦର ମୋ ଜନମଭୂଇଁ,
ସୁନ୍ଦର ତା' ଶାଗୁଆ ବନ,
ସୁନ୍ଦର ତା' ପାହାଡ ନଈ ।
ସୁନ୍ଦର ଏଇ ଗଛଲତା,
ସୁନ୍ଦର ମଧୁ ପବନ ତା'ର
ସୁନ୍ଦର ଏଇ ଦେଶରେ ମୋର,
ସୁନ୍ଦର ଯେତେ ଭଉଣୀଭାଇ ।
ଗୋପାଳ ପିଲାର ବଂଶୀ ସ୍ୱନ,
ମଧୁରତାରେ ଭରେ ପ୍ରାଣ
କେତେ ସୁନ୍ଦର ଦିଶନ୍ତି ଯେବେ,
ଫେରନ୍ତି ତା'ର ଗୋଠରୁ ଗାଈ ।
ଏ ଦେଶ ମାଟି କି ସୁନ୍ଦର,
ସୁନ୍ଦର ଘାସ ଫୁଲ ଫଳ,
ସୁନ୍ଦର ସେ ସୁନ୍ଦରତମ,
ସବୁଠୁ ସେ ଜଗତସାଇଁ ।



# ଏଇ ଦେଶ ଏଇ ମାଟି

ଏଇ ଦେଶ ଏଇ ମାଟି
ମମତାମୟୀ ମାଟି
ସେବାରେ ତା'ର ଜୀବନ ଦେବା
ରଖିବା ତା'ର ନାଁଟି
ସୁଜଳା ସୁଫଳା ଶସ୍ୟ ଶ୍ୟାମଳା
ଆମ ଏ ଜନ୍ମମାଟି ।
ଯହିଁ ଝରଣା ଝରି ଯାଏ
ଯହିଁ କୋଇଲି କୁହୁ ଗାଏ
ସୁନା ଫସଲ ଲହରୀ ଖେଳେ
ବୁକୁରେ ଯାଏ ଲୋଟି ।
ଚିର ମଳୟ ଯା'ର ପବନ
ଚିର ସବୁଜ ଯା'ର କାନନ
ସାଗର ଯାହାର ରତ୍ନ ଭଣ୍ଡାର
କୋଟି ରତ୍ନ ଦିଏ ଭେଟି ।





# ବନ୍ଦେ ଜନନୀ ଜନ୍ମଭୂମୀ

ବନ୍ଦେ ଜନନୀ ଜନ୍ମଭୂମୀ (୨)
ସପ୍ତ ସାଗର ନିତ୍ୟ ଯାହାର,
ଚରଣ ଯାଏ ଚୁମି ଚୁମି ।
ତୁଙ୍ଗ ହିମାଳୟ ଯାହାର ପ୍ରହରୀ,
ଗଙ୍ଗା ଯମୁନା ନଦୀତଟ ବାରି,
ମନ୍ଦ ମନ୍ଦ ତୋଳି ସେ ଛନ୍ଦ
ଆନନ୍ଦେ ଯାଏ ଝୁମି ଝୁମି ।
ଅଞ୍ଚଳ ଯାହାର ଘନନୀଳ ବର୍ଣ୍ଣ
ଚଞ୍ଚଳ କଣ୍ଠେ ବିହଙ୍ଗର ତାନ,
ନୀଳ ଅମ୍ବରେ ଗୁରୁ ଗମ୍ଭୀରେ,
ଉଚ୍ଚାର କରନ୍ତି ମୈତ୍ରୀବାଣୀ ।
ସନ୍ତାନ ଆମେ ତା ପ୍ରାନ୍ତ ସୈନିକ,
ସତ୍ୟ ଅହିଂସା ଆମରି ଶାୟକ,
ଯୁକ୍ତ କରେ ମୁକ୍ତ ସ୍ୱରେ,
ଗାଇବୁ ମାଆର ଜୟଧ୍ୱନୀ ।



# ବନ୍ଦେ ଉତ୍କଳ ଜନନୀ

ବନ୍ଦେ ଉତ୍କଳ ଜନନୀ
ଚାରୁ ହାସ୍ୟମୟୀ ଚାରୁ ଭାଷ୍ୟମୟୀ
ଜନନୀ ଜନନୀ ଜନନୀ ।
ପୂତ ପୟୋଧି ବିଧୌତ ଶରୀର
ତାଳ ତମାଳ ସୁଶୋଭିତ ତୀର
ଶୁଭ୍ର ତଟିନୀ ତଟ ଶୀତଳ ସମୀର
ଜନନୀ ଜନନୀ ଜନନୀ ।
ଘନ ଘନ ବନଭୂମୀ ରାଜିତ ଅଙ୍ଗେ
ନୀଳ ଭୂଧରମାଳା ଶୋଭେ ତରଙ୍ଗେ
କଳକଳ ମୁଖରିତ ଚାରୁ ବିହଙ୍ଗେ
ଜନନୀ ଜନନୀ ଜନନୀ ।
ସୁନ୍ଦରଶାଳୀ ସୁଶୋଭିତ କ୍ଷେତ୍ର
ଜ୍ଞାନବିଜ୍ଞାନ ପ୍ରଦର୍ଶିତ ନେତ୍ର
ଯୋଗୀ ଋଷିଗଣ ଉଟଜ ପବିତ୍ର
ଜନନୀ ଜନନୀ ଜନନୀ ।



# ନୀଳ ଆକାଶର ପରୀରାଇଜ

ନୀଳ ଆକାଶର ପରୀରାଇଜର
କଥା ଆଜି ଆମେ କହୁନାହୁଁ,
ସପନ ଲହରୀ ଭିତରେ ପହଁରି
ଭାସିବାକୁ ଆମେ ଚାହୁଁନାହୁଁ ।
ଶିବାଜୀ ଅଥବା ସୁବାଷ ହେବାକୁ
ଆମେ ଆଜି ଆଉ ଆସିନାହୁଁ,
ସମାଜବାଦର ହୁଙ୍କାର ଦେଇ
ଭଣିତା କରିବା ଶିଖିନାହୁଁ ।
ନୂଆ ଜଗତର ଶିଶୁ ଆମେ ସବୁ
ଆସିଅଛୁ ଏଇ ଧରା ପରେ,
ହୃଦୟେ ଆମରି ଦୀପ୍ତ ଆଲୋକ
ଚକ୍ଷୁରେ ଶତ ସୂର୍ଯ୍ୟ ଜଳେ ।
ଆମରି ସଙ୍ଗୀତ ଆମରି କଣ୍ଠେ ଆଜିରେ,
ଲଙ୍ଘିବୁ ଆମେ ଜଡ ତମସାର ରାତିରେ
ନିଶ୍ଚୟ ଆମେ ହେବୁ ଆଗାମୀ କାଲିର ସୂର୍ଯ୍ୟ ।



# ଗ୍ରାମ ଦେଶ ପାଇଁରେ

ଗ୍ରାମ ଦେଶ ପାଇଁରେ
ଆମେ କାମ କରିବା,
କୋଡି ଧରି ମାଟି ହାଣି ମଞ୍ଜି ବୁଣିବା,
ଗଦା ଗଦା ଶସ୍ୟ ଆଣି ଲୋକଙ୍କୁ ଦେବା,
ଆମେ ହୋଇବା କୃଷୀ ।
ଲଙ୍ଗଳ ଜୁଆଳୀ ମଇ ଯତନେ ଗଢ଼ି,
ଦେଶ ସେବାରେ ନିଜକୁ ଦେବାରେ ବଳି,
ଆମେ ହୋଇବା ବଢ଼େଇ ।
ରଙ୍ଗ ଆଉ ତୁଳୀ ନେଇ ମୋ ଦେଶ ଛବି,
ଆଙ୍କିବାରେ ଏ ଦେଶକୁ ମନରେ ଭାବି,
ଆମେ ହୋଇବା ଶିଳ୍ପୀ ।
ଆମେ ସବୁ ଏ ଦେଶର ଟିକି ଫଉଜ,
ଗଢ଼ିବାରେ ଏ ଦେଶକୁ ରାମ ରାଇଜ,
ଆମେ ହୋଇବା ବଡ଼ ।



# ମାଦଳ ବାଜିଲା

ମାଦଳ ବାଜିଲାରେ ଘୁମୁରା ବାଜିଲା
ଆମେ ସବୁ ଅଟୁ ଭାଇ ବାଜିରାଉତ ଚେଲାରେ
ଗୁଳି ଗ୍ରେଟେ ପ୍ରାଣ ଯେହୁ ଦେଲା ।
ଅନ୍ଧାରି ମୁଲକ ମଧ୍ୟେ ଦିହୁଡି ଜାଳିଲାରେ
ବାର ବରଷର ମାଟି ପିଲା
ଅନ୍ଧାରି ମୁଲକରେ ଅନ୍ଧାରି ମୁଲକେ
ଗୁଳି ଆବାଜରେ ବୀର ବାଜି ଆସି ଡାକେରେ
ଜାଗିଉଠ ଗଡଜାତି ଲୋକେ
ସେଇ ରାଇଜ ପିଲାରେ ଆମେ ସେଇ ରାଇଜ ପିଲା
ଯେଉଁ ରାଇଜ ପିଲା ହସି ହସି ପ୍ରାଣ ଦେଲା
ଦେଶ ଆଗେ କୀର୍ତ୍ତି ରଖିଗଲା ।

(ଅନୁଗୋଳର ବାଜିରାଉତ ଛାତ୍ରାବାସର ଗୀତ)



# ହିନ୍ଦୁ ନୁହେଁ କି ମୁସ୍‌ଲିମ୍ ନୁହେଁ

ହିନ୍ଦୁ ନୁହେଁ କି ମୁସ୍‌ଲିମ୍ ନୁହେଁ
ମଣିଷ ଆମ ନାଁ
ସାରା ଦୁନିଆ ଆମରି ଘର
ଭାରତ ଆମ ମାଆ ।
ଏ ନୀଳ ଆକାଶ ନୀଳ ସାଗର
ସେ ନଦୀ ଝରଣା କେତେ ନିଜର
ତା' ଠାରୁ ନିଜର ଏ ସୁନା ମାଟି
ଅତି ଆପଣାର ଏ ମଣିଷ ଜାତି
ଭେଦ ପାଚେରୀ କାହିଁକି ହେବ ଭିତରେ ଆମ ଠିଆ ।
ଇସାଇ ନାନକ ରାମ ରହିମ
ଆମ ପାଇଁ ସତେ କେତେ ମହାନ
ଏ ସବୁଠୁ ବଳି ଦେଶ ମହାନ
କେତେ ନିବିଡ଼ ଏ ସାରା ବନ୍ଧନ
ଆମେ ସଭିଏଁ ସେବକ ତା'ର ସିଏ ତ ଆମ ମାଆ ।
ମଣିଷ ଆମେରେ ଶାନ୍ତି ପ୍ରେମର
ଭେଦଭାବ ନାହିଁ ଶତ୍ରୁ ଆମର
ସବୁରି ଓଠେ ହସ ଫୁଲ ଫୁଟିବ
ସବୁରି ଘରେ ପୁଣି ଦୀପ ଜଳିବ
ଏଇ ଭାବନା ମନରେ ରଖି ଚଲାଇ ନେଉ ନାଆ ।

# ଶୁଣରେ ପିଲେ ଗୀତ

ଶୁଣରେ ପିଲେ ଗୀତ
ଏଇ ମୋ ଦେଶ ଭାରତ
ଏଇ ମୋର ସରଗ
ଆଉ ଏଇ ମୋର ମରତ ।
ଏଇଠି ଦିନେ ଜନମ ନେଲେ ଗାନ୍ଧୀ ଜବାହାର
ଜନମ ନେଲେ ଜଇନ ବୁଦ୍ଧ ନାନକ ଶଙ୍କର,
ଏଇ ଭାରତ......
ଏଇ ଦେଶରେ ଗଙ୍ଗା ବହେ ଶୁଣ ଇତିହାସ,
ହିମାଳୟର ଶୁଭ୍ର ମୁଖ ନିତି ହସ ହସ,
ଯେଉଁ ଦେଶର ଦେଉଳେ ବିଜେ ନିଜେ ଜଗନ୍ନାଥ ।
ମଳୟ ଯାର ବଳୟ ଛୁଇଁ ମୈତ୍ରୀବାଣୀ କହେ
କୋଇଲି ଯାର ଅଶନେ ଉଡି ଶାନ୍ତି ଗୀତ ଗାଏ,
ଓମ୍ ଶାନ୍ତି ... ଓମ୍ ଶାନ୍ତି ...
ସୂର୍ଯ୍ୟ ଯାର ସକାଳେ ଉଇଁ ପାହାଡ ମଥା ଛୁଏଁ,
ବଉଦ କୋଳୁ ଜହ୍ନମାମୁ ମୁରୁକି ହସା ଦିଏ,
ରୂପରେ ଯାର ଅଙ୍କା ହୁଏ ଏଇ ଭାରତ ଦେଶ ।



# ହିନ୍ଦ ଦେଶ୍ କେ ନିବାସୀ

ହିନ୍ଦ ଦେଶ୍ କେ ନିବାସୀ
ସଭି ଜନ୍ ଏକ୍ ହୈ,
ରଙ୍ଗ ରୂପ୍ ବେଶ୍ ଭାଷା
ଚାହେ ଅନେକ ହୈ ।
ବେଲା ଗୁଲାବ୍ ଯୁହି, ଚମ୍ପା ଚମେଲି,
ପ୍ୟାରେ ପ୍ୟାରେ ଫୁଲ୍ ଗୁନ୍ଥେ
ମାଲା ମେ ଏକ୍ ହୈ ।
କୋୟଲ୍ କି କୁକ୍ ପ୍ୟାରୀ,
ପପିହେ କି ଟେକ୍ ନ୍ୟାରୀ,
ଗା ରହି ତରାନା ବୁଲ୍‌ବୁଲ୍,
ରାଗ୍ ମଗର୍ ଏକ୍ ହୈ ।
ଗଙ୍ଗା ଯମୁନା ବ୍ରହ୍ମପୁତ୍ର,
କ୍ରିଷ୍ଣା କାବେରୀ,
ଯା କେ ମିଲ୍‌ଗୟୀ ସାଗର୍ ମେଁ,
ହୁଇ ସବ୍ ଏକ୍ ହୈ ।



# ଆଜାଦି କି ଖୁଲି ହୱା ମେଁ

ଆଜାଦି କି ଖୁଲି ହୱା ମେଁ
ନିକଲେ ସିନା ତାନ୍ କେ,
ବାଲକ୍ ହିନ୍ଦୁସ୍ଥାନ୍ କେ ହମ୍ ସୈନିକ୍ ହିନ୍ଦୁସ୍ଥାନ୍ କେ ।
ହମ୍ ଜିସ୍ ମିଟି କେ ଅଙ୍କୁର୍ ହେଁ,
ଉସ୍‌କି ସାନ୍ ନିରାଲି ହେଁ,
ଜିସ୍‌କେ ଖେତୋ ମେଁ ସୋନା ହେଁ,
ବାଗୋଁ ମେଁ ହରିଆଲି ହେଁ,
ଧନ୍ ଦୌଲତ୍ ସେ ଜ୍ୟାଦା ଉଞ୍ଚେ ରିସ୍ତେ ହେଁ ଇନ୍‌ସାନ୍ କେ ।
ହମ୍ ଭି ହସ୍‌ନା ଶିଖ୍ ରହେ ହେଁ
ଖିଲ୍‌ତେ ହୁଏ ଗୁଲାବ୍ ସେ,
ପାଠ ପଢେଙ୍ଗେ ହମ୍ ଜୀବନ କେ
ଖୁଲି ହୁଇ କିତାବ ସେ,
ହମ୍ ଭି ଝେଲେଙ୍ଗେ ସବ୍ ହମ୍‌ଲେ
ଆନ୍ଧି ଔର୍ ତୁଫାନ୍ ସେ ।
ହୱା ହମାରି ଧୁପ୍ ହମାରା
ନୀଲ୍ ହମାରି ପାୱନ୍ ହେଁ,
ତନ୍ ମନ୍ ମେ ଖିଲ୍‌ତେ ଶୌ ବସନ୍ତ
ମନ ହରିଆଲି ସାୱନ୍ ହେଁ
ଭାରତ ମା କି ବେଟେ ହେଁ ସବ୍
ଅପ୍‌ନେ ଅପ୍‌ନେ ସାନ୍ କେ ।

# ହମ୍ ସବ୍ ଭାରତୀୟ ହେଁ

ହମ୍ ସବ୍ ଭାରତୀୟ ହେଁ
ଅପନି ମଞ୍ଜିଲ୍ ଏକ୍ ହେଁ ହା-ହା-ହା-...
ଏକ୍ ହେଁ ହୋ-ହୋ-ହୋ....ଏକ୍ ହେଁ ।
କାଶ୍ମୀର କି ଧରତୀ ରାନୀ ହେଁ, ସରତାଜ ହିମାଳୟ ହେଁ,
ସଦିଓଁ ସେ ହମ୍‌ନେ ଇସିକୋ ଅପନି
ଖୁନ୍‌ସେ ପାଲା ହେଁ,
ଦେଶ୍ କେ ରକ୍ଷା କେ ଖାତିର
ହମ୍ ସବ୍ ଶିର୍ ଉଠାଲେଙ୍ଗେ,
ବିଖରେ ବିଖରେ ତାରେ ହେଁ ହମ୍
ଲେକିନ୍ ଝିଲ୍‌ମିଲ୍ ଏକ ହେଁ ।
ମନ୍ଦିର ଗୁରୁଦ୍ୱାର ଭି ହେଁ ୟହାଁ,
ଔର ମସଜିଦ୍ ଭି ହେଁ ୟହାଁ
ଗିର୍‌ଜା କା ହେଁ ଘଡିଆଲ୍ କହିଁ ମୁଲ୍ଲା କି ଆବାଜ୍ କହାଁ,
ଏକ୍ ହି ଅପନି ରାମ ହେଁ ଏକ ହି ଆଲ୍ଲା ତାଲା ହେଁ,
ରଙ୍ଗ ବିରଙ୍ଗେ ଦୀପକ ହେଁ ହମ୍
ଲେକିନ୍ ଜଗ୍‌ମଗ୍ ଏକ୍ ହେଁ ।
ଅବ୍ ସାରି ଦୁନିଆ ମେଁ ହମ୍ କୋଇ
ଜଙ୍ଗ ନା ହୋନେ ଦେଙ୍ଗେ,
ଅବ୍ ସାରି ଦୁନିଆ ମେଁ ହମ୍ କିସିକୋ
ମୌତ୍ କି ନିନ୍ଦ୍ ନା ସୋନେ ଦେଙ୍ଗେ,
ଅମନ୍ ହି ଅପନା ଗୁଞ୍ଜା ହେଁ, ଅମନ ହି ଅପନା ନାରା ହେଁ,
ଉଞ୍ଚେ ନୀଚେ ଲହର ହେଁ ହମ୍
ଲେକିନ୍ ସାହିଲ୍ ଏକ ହେଁ ।

# ସାରେ ଜାହାଁ ସେ

ସାରେ ଜାହାଁ ସେ ଅଚ୍ଛା
ହିନ୍ଦୁସିତା ହମାରା,
ହମ୍ ବୁଲ୍‌ବୁଲେ ହୈ ଇସିକି,
ୟେ ଗୁଲ୍‌ସିତା ହମାରା ।
ପରବତ ହୋ ସବସେ ଉଞ୍ଚା,
ହମ୍‌ସାୟା ଆସମାନ କା
ୱ ସନ୍ତରି ହମାରା
ୱ ପାଶ୍ୱାଁ ହମାରା ।
ଗୋଦି ମେଁ ଖେଲତି ହୈ,
ଇସିକି ହଜାର ନଦୀୟାଁ,
ଗୁଲ୍‌ଶନ୍ ହୈ ଜିସ୍‌କେ ଦମ୍ ସେ
ରସ୍ କେ ଜିନା ହମାରା ।
ମଜହବ ନେହିଁ ଶିଖାତା,
ଆପସ ମେଁ ବୈର୍ ରଖନା,
ହିନ୍ଦି ହୈ ହମ୍ (୩ଥର)
ବତନ୍ ହେ, ହିନ୍ଦୁସିତା ହମାରା ।

ଇକବାଲ



# ମୁଁ ଏଇ ଆକାଶର

ମୁଁ ଏଇ ଆକାଶର ଶିଶିର ବିନ୍ଦୁଟିଏ
ସୂରୁଜ ହସେ ଦିନେ ହସିବି
ସକାଳ ନଦୀ ତୀରେ ବାଲିର ଅଗଣାରେ
ମୁକୁତା ବିନ୍ଦୁଟିଏ ତୋଳିବି ।
ଝରି ଝରି ଏ ଝରଣା ଦେଖ
ଦୂର ପଥରେ ଧାଏଁ
ଉଜୁଡା ଯେତେ ହସର ଢେଉ
ତା' ପାଇଁ ଖେଳିଯାଏ



ଭରସା ଭରା ସୁନେଲି ସେତୁ
ମନେ ତା' ବାନ୍ଧିଦିଏ
କେବେ ନା କେବେ ପାଇବ ଖୋଜି
ଦୂରସାଗର ସିଏ
ସେ ତ ସରାଗେ ଝରିଯାଏ
ସାଗର ଖୋଜି ପାଏ ।



ସିରି ସିରି ଏ ପବନ ଦେଖ
ଆସଇ ଧୀରେ ବହି
ସୁରଭିଭରା ବାରତା କେତେ
ଯାଏ ସେ ଫୁଲେ କହି
ପୁଲକି ଉଠେ ସାଗର ନଈ ପରଶ ପାଇ ତା'ର
ଗହନ ବନ ମଧୁ ବିତାନ ଯା' ପାଇଁ ଉଜାଗର
ସେଇ ବାରତା ହୃଦେ ନେଇ
ମୁଁ ଯେ ସରାଗେ ଯିବି ବହି ।

ଶାନ୍ତିଲତା ରାୟ

# ସୃଜନିକାର ଅନ୍ୟ କିଛି ପ୍ରକାଶନ:

| | | |
|---|---|---|
| ୧. | ବିଜ୍ଞାନ ପରଖ | ୨୦.୦୦ |
| ୨. | ପ୍ରକୃତି ପରଖ | ୨୦.୦୦ |
| ୩. | ଖେଳି ଖେଳି ଶିଖିବା | ୧୨.୦୦ |
| ୪. | ହାତ ତିଆରି ଖେଳନା | ୧୫.୦୦ |
| ୫. | ପତ୍ରରୁ ଚିତ୍ର | ୧୨.୦୦ |
| ୬. | ସହଜରେ ଆଙ୍କିବା ଗଛଲତା | ୧୫.୦୦ |
| ୭. | ଚିତ୍ରପାହାଚରେ ଚିଡ଼ିଆଖାନା | ୧୫.୦୦ |
| ୮. | ଗଛବଇଦ | ୧୫.୦୦ |
| ୯. | କାଗଜଭଙ୍ଗାର ମଜା | ୧୫.୦୦ |
| ୧୦. | କାଗଜରୁ ଆକୃତି | ୨୦.୦୦ |
| ୧୧. | କାଗଜ ଭଙ୍ଗାରୁ ଜ୍ୟାମିତି | ୨୦.୦୦ |
| ୧୧. | ବିଜ୍ଞାନପହଳି | ୮.୦୦ |
| ୧୨. | କାଗଜର ଖେଳ | ୧୨.୦୦ |
| ୧୩. | ଗଣିତ କୁହୁକ | ୧୨.୦୦ |
| | ଓ ଆହୁରି ଅନେକ | |

*ଏହାଛଡ଼ା ଶିକ୍ଷା ଓ ବିଜ୍ଞାନ ଉପରେ ଅନ୍ୟମାନଙ୍କ ଦ୍ୱାରା ପ୍ରକାଶିତ କିଛି ବହିର ବିତରଣ ମଧ୍ୟ ସୃଜନିକା କରିଥାଏ। ପୂରା ମୂଲ୍ୟ ସହିତ ଡାକ ଖର୍ଚ୍ଚ ଟ୨୦.୦୦ ଆଗୁଆ ପଠାଇଲେ ବହିଗୁଡ଼ିକ ରେଜିଷ୍ଟ୍ରି ଡାକରେ ପଠାଯାଏ।*

**ବିଜ୍ଞାନ ତରଙ୍ଗର ଗ୍ରାହକ ଦେୟ**

| | | |
|---|---|---|
| ବାର୍ଷିକ | ସାଧାରଣ | ୭୫.୦୦ |
| | ଅନୁଷ୍ଠାନ/ସହଯୋଗୀ | ୧୦୦.୦୦ |
| ଆଜୀବନ | | ୧୦୦୦.୦୦ |

# ଆମ ମନର ଗୀତ

ଗୀତ ଶୁଣିବାକୁ ସମସ୍ତଙ୍କୁ ଭଲ ଲାଗେ। ମନର ଭାବକୁ ପ୍ରକାଶ କରିବା ପାଇଁ ଗୀତ ଏକ ବଢ଼ିଆ ମାଧ୍ୟମ। ବିଜ୍ଞାନମେଳା ଭଳି କାର୍ଯ୍ୟକ୍ରମରେ ନିଜ ନିଜ ଭିତରେ ଥିବା ଅଜଣା ଭାବ କଟାଇବାରେ ବା ପିଲା-ବଡଙ୍କ ଦୂରତା କମାଇବାରେ ଗୀତ ବହୁତ ସାହାଯ୍ୟ କରେ।

ପିଲାଙ୍କ ମନକୁ ଛୁଇଁଲା ଭଳି କିଛି ଗୀତ ସଂଗ୍ରହ କରି ବହିଟି ପ୍ରସ୍ତୁତ କରାଯାଇଛି। ଗୀତଗୁଡ଼ିକର ସ୍ୱର ବେଶ୍ ସରଳ, ଯେପରି ସମସ୍ତେ ଗାଇପାରିବେ। ଏଥିପାଇଁ ଭଲ ଗାୟକ ବା ସଙ୍ଗୀତଜ୍ଞ ହେବା ଦରକାର ନାହିଁ। କେବଳ ଗୀତ ଗାଇବା ପାଇଁ ଆଗ୍ରହ ଓ ଉତ୍ସାହ ହିଁ ଏଥିପାଇଁ ଯଥେଷ୍ଟ।

ଏସବୁ ଗୀତ ଭିତରେ ରହିଛି କିଛି ନୂଆ, କିଛି ପୁରୁଣା, କିଛି ଲୋକଗୀତ, ଇକବାଲ, ସଫଦର ହଶମୀଙ୍କ ଭଳି ଲେଖକଙ୍କର କିଛି ଗୀତ, ବିଜ୍ଞାନଗୀତ. ଚେତନାଗୀତ, ଦେଶାତ୍ମବୋଧକ ଗୀତ ସହିତ ବେଶ୍ କିଛି ଶିଶୁଗୀତ।

ଆଶାକରୁଛୁ ଗୀତଗୁଡ଼ିକ ପିଲାଙ୍କ ମନକୁ ଛୁଇଁବ ଓ ପିଲାଙ୍କ ସାଙ୍ଗରେ ମିଶି କାମ କରିବା ପାଇଁ ବଡମାନଙ୍କୁ ପ୍ରେରଣା ଯୋଗାଇବ।

ମୂଲ୍ୟ ୧୨.୦୦